୧—ତୋ ନୂତନ ୧ଅନୁରାଗିଣୀ । ଚନ୍ଦ୍ରହାସିନୀ ତୋ ନେତ୍ରଙ୍କୁ ଶ୍ରୀକରେ ହାଦ ନ ଆସଇ । ନୂତନ ପଦ୍ମ ୩ପତ୍ର ଶଯ୍ୟା ପୋଢ଼ି-ଯାଏ । କୁଞ୍ଜବାଳ ସମୀରଣ—୪ଧୂଁ ଆହ୍ୱାନ ୫ଅଗ୍ନିଶିଖାରୁ ବେଶି କଷ୍ଟ ଦେଉଅଛୁ ।

୨—ସେ ଯେଉଁ ଶ୍ରୀକୃଷ୍ଣଙ୍କର ୧ନିର୍ଦ୍ଦୟ ଗୁଣ ତାହା ୨ବଜ୍ରରୁ ବେଶି ହୋଇଅଛୁ । ୧ନ୨ଷ୍ଟ୩ଯ୍ ଏହି ତିନ ୩ଅକ୍ଷର ସତିନାହିଁ କେବଳ ସଖୀମାନଙ୍କୁ ବିଶେଷ ମୋହିତ କରିବା ମନ୍ତ୍ରଟିକି କପଟ ୪ସରୁଆସର ମନଟିରେ ଯନ୍ତ୍ରକରି ରଖିବା କଥାଟି ଉତ୍ତମରୂପେ ଜାଣେ ଅର୍ଥାତ୍ ସେ ଜଣେ ମୈତ୍ରୁଆ ଓ କପଟି ଅଟନ୍ତି ।

୩—ରେ ୧ରାଜୀବନୟନା, ମୁଁ ଶ୍ରୀକୃଷ୍ଣଙ୍କଠାରୁ ହିନେ ଅସ୍ୱୀକୃତ ହେବାକଥା ଆଦୌ ଶୁଣିନାହିଁ ନଶୁଣିଲେ ହେଲେ ଜଣହେବ ଯେବେ ସ୍ତ୍ରୀମାନଙ୍କୁ ଅନ୍ୟ ଉପାୟ ଥିବ ତେବେ କନ୍ଦର୍ପଅଙ୍କ ପ୍ରିୟରେ ଭୁଲି-ବେ ନାହିଁ ।

୪—ନ ବର୍ଷରୁ ଊଣା ବୟସ୍ତରେ ନଖମୂନରେ ଗୋବର୍ଦ୍ଧନ ପର୍ବତକୁ ୧ଟେକି ଧରିଥିଲା ଏହାତ ତୋତେ ଜଣାଅଛି, ଗୋ ସ୍ତୀଣକଟି କି ହିଣ୍ଡକଟି ତୋର ନୂତନ ୨ପଦ୍ମକଳିପରି ଯେଉଁ ସ୍ତନଦ୍ୱୟ ସେ କି ସେ ହାତକୁ ୩ପାଇବ ଅର୍ଥାତ୍ ଗୋବର୍ଦ୍ଧନ ପର୍ବତକୁ ଯେଉଁ ହାତର ନଖାଗ୍ରେ ଧରିଥିଲେ ସେ ହାତକୁ ଏ କୋମଳ ପୁଷ୍ପକଳି ସଦୃଶ କୁଚ କେଉଁଠାକୁ ପାଇବ ଏହା ତୁ ଜାଣ ।

୫—ଶ୍ରୀକୃଷ୍ଣଙ୍କର ଯେ କଥା ସେ ରସ ୨କ୍ଷରଣ ଅମୃତଧାରାକୁ ହାନା ୩କଲାରର ୧ସର୍ବଦା ଜଣାଯାଏ କିନ୍ତୁ ମୁହୂର୍ତ୍ତକରେ ମହାନାଗ କି ୭ବାସୁକିର ୫ଗଣ୍ଠିଧନ ଅଟେ ଯେ ଉତ୍କଟ ୪ବିଷ ତାହାକୁ ଜଣି ସେ ଅମୃତ ଧାରା ବଚନମାନ କଷ୍ଟ ଦିଏ ।

୭—ରେ ନବ ପ୍ରସ୍ଫୁଟିତ ୩ମନ୍ଦାର କଇଁଥ ୪କାକୁଡ ପଦ୍ମରାଗମଣି କିମ୍ବା ହେଉଗଲା ଏରୂପ ଓଷ୍ଠି ତୁ ୧ଅପଦ ଦର ୨ଗୃହହେବୁ ଅର୍ଥାତ୍ ଛନ୍ଦାପାଇବୁ ୫ଚନ୍ଦ୍ରକିରଣ କଳା ସମୂହ ଅର୍ଥାତ୍ କ୍ଷୀଣଚନ୍ଦ୍ରର କିରଣ ୭ପ୍ରଳୟ କାଳର ସୂର୍ଯ୍ୟତାପ ସଦୃଶ ହେବ ଅର୍ଥାତ୍ ତୋ ପ୍ରତି ବିଶେଷ ଅନିଷ୍ଟ ଘଟିବ ।

୭—ଗୋ ରାଧିକେ, ଜଣାଉଅଛୁ ଓ ତୋର ହସ୍ତପଦ୍ମ ଧରୁଛୁ ୧ଶୋଇବାରେ ଖାଇବାରେ ଅରୁଚି ହେଲେ ହେଉ ପଛକେ ତୁ ୨ନୀଳବର୍ଣ୍ଣ ଭୃଙ୍ଗଙ୍କୁ ୩କୁରୁଳାଚଳ ହାରମାନ ନ ଦେଖ ଅର୍ଥାତ୍ ସେ ବାହୁକୁ ତୋ ଗଳାରେ ନ ଛନ୍ଦ ଏହା ମନୁଷ୍ୟଶ୍ରେଷ୍ଠଙ୍କ ସ୍ରଜା ହରିଚନ୍ଦନ ଭାଷଇ ।

——*○*——

ମାମଭ୍ରୂଂଲିହନବ୍ୟବ୍ୟବଭ୍ରଭୀନିର୍ଯ୍ୟୁଙ୍କ୍ଷିକା-
ସଂକ୍ଷିପ୍ତାଂ ପ୍ରବଧାନ୍ୟ ବାଥିପସି କିଂ ତସ୍ମାଦଧୋଽଧଃ ପୁନଃ ।
ଆର୍ତ୍ତସ୍ୟାପି ପିପାସୟାମୃତଝରୀବାର୍ତ୍ତାଂ ନିବେଦ୍ୟ ଶ୍ରୁତୌ
ଭୂୟଃ ଶମ୍ବକଦମ୍ବକେଲିକଟିନା କିଂ ଭାରତୀଂ ଭାଷସେ ।

କିନ୍ତ୍ରୋଃ ସନ୍ତତଚନ୍ତ୍ରାରୁନ୍ତୁଦକୁନ୍ତଦୃକ୍ଷାଗ୍ର ଦଳିତହୃଦୟସ୍ୟ ପିପାସାର୍ତ୍ତସ୍ୟ ବଦାନ୍ୟକେ ସୁଧାସୁଧାରାଂ ବନ୍ୟସ୍ୟମନ୍ତୁ ମନ୍ତ୍ରଣେବ ପୂନରାଚ୍ଛିଦ୍ୟ କୋବାମ୍ନିନସତ ।

ଶ୍ରୀରାଧା ।

ରାଗ-ଭୈରବ । ଆଡତାଳୀ ।

ପ୍ରେୟସୀ । ୧ସରମାଦ ବଡ ତୁହି ଗୋ ।

ଯାରୁ ରଚସ କେତେ ଛନ୍ଦେ ମୋହ ଗୋ । ପଦ ।

୧ପରମପଦରେ ନେଇ ଜାଣୁ ତୁ ବସାଇ । ପୁଣି ତହିଁ ଆଣୁ ୨ତଳା-
ତଳକୁ ଖସ ର । ପାଶୋରାଇ ମନୁ ନାନା କନ୍ଦନ ଲଗାଇ । ପୀଡୁ ଅଛୁ

ବରଷାଇଁ ଗୋ ।୧। ୧ପରବଚନ୍ଦ୍ର ଚପୁଡ଼ ପିଇବା ୨ପୀୟୂଷ । ପରିଣତ
ସମନ୍ତେ ସେ ହେବ ଯେବେ ବିଷ ।୩ପ୍ରସନ୍ନ ହେବା ଗଙ୍ଗାରେ ଜନ୍ମିଲେ
୪କଳ୍ମିଷ । ୫ପ୍ରୟୋଗ କରିବା କିସ ଗୋ ।୨। ପ୍ରବଞ୍ଚନା କରେ ଜଣା
ନ ଥାଏ ସନ୍ଦେହ । ସଧବ ନୁହଇ ପରପୁରୁଷରେ ସ୍ନେହ । ପରବଶ
ହେବ ଯେବେ ପ୍ରାଣତୁଲେ ଦେହ । ପ୍ରାଣୀ କି କରିବ କହ ଗୋ ।୩।
ପିଅଇ ଦୁହିଙ୍କି ଥରେ ଦୁହିଁଙ୍କ ଅଧର । ପଚ୍ଛେ କାହ ଆଚରଣ ୧ପୂତନା
ବଧର । ଯୀତପଟ ନଟ ନା ମୋ ଆଗରେ ନ ଧର । ପାଳଏ ,ମାଙ୍କ
ଭୂଧର ଗୋ ।୪। ୧,ଚନ୍ଦ୍ରମଣି ଶ୍ୟାମେ ଅଛୁ ମୋର ୨ଆଶ । ପର
୩ପ୍ରତିବାଦ ମୁଣ୍ଡେ ୪ଟାକର ବରଷ । ୫ପୃଥ୍ୱୀଚନ୍ଦ୍ରବାଳ ପରିବୃତ ବାଲ୍ମି
ବେଶ । ପ୍ରସନ୍ନିଇଲେ ଏ ରସ ଗୋ । ୫ ।

—❊○❊—

ଅର୍ଥ—ଗୋ ପ୍ରିୟଲଳିତେ ତୁହି ବଡ଼ ୧ଅପବାଦ ଘଟାଇ ପାରୁ, କାରଣ ତୁ କେତେ ପ୍ରକାର ରସରେ କପଟରେ ମନକୁ ହରି ନେଇପାରୁ ।

୧—ତୁ ୧ ସ୍ୱର୍ଗରେ ନେଇ ବସାଇବା ଜାଣୁ ପୁଣି ସେ ସ୍ୱର୍ଗରୁ ଖସାଇ ୨ ପାତାଳ ପର୍ଯ୍ୟନ୍ତ ଆଣୁ, ୩ ବିବିଧଦୁଃଖ ହତଣକରୁ ପୁଣି ଲୋକକ ବୁହାଇ ତରୁ କଷ୍ଟ ପାଶୋରାଇ ଦେଉ ।

୨—୧ପୂର୍ଣ୍ଣଚନ୍ଦ୍ରଙ୍କଠାରୁ ନିଗାଡ଼ି ୨ଅମୃତ ପାନକାଲେ ଯେବେ ତାହା ବିଷ ହୋଇଯିବ, ଆଉ ପ୍ରସନ୍ନ ହେବାକୁ ୩ ଅଣ୍ଟିତ ଦେବା ଗଙ୍ଗାରେ ଯଦିବା ୪ପାପ ଛାଡ଼ିହୁଏ ଅର୍ଥାତ୍ ଗଙ୍ଗାରେ ବୁଡ଼ିଦେଲେ ପାପ କ୍ଷୟ ହୋଇ ପୁଣ୍ୟ ହୁଏ । ଯଦିବା ଏହାଁର ବିପରୀତ ଗୁଣ ହେଲା ତେବେ ଏଥିକି ୫ ଉପାୟ କରିବ କିଅଣ ?

୩—କୌଣସି ଲୋକଠାରେ ସନ୍ଦେହ ନଥାଏ ଅର୍ଥାତ୍ ନିର୍ମଳ ଆତ୍ମା ବୋଲି ଜଣା ପଡ଼ୁଥାଏ କିନ୍ତୁ ଠକାମି କରେ ଏହା ପ୍ରକୃତ ଅଟେ । ପରପୁରୁଷମାନଙ୍କଠାରେ ଅନୁରାଗ କରିବା ଉଚିତ ନୁହେ ଏହା ଯଥାର୍ଥ

ଅଟେ ହେଲେ କି ହେବ । ଯେବେ ଲୋକକାପ୍ୟୋ ମନବାଞ୍ଛ୍ୟ ସହ ଘଟର ଅକ୍ତିଆର ହୋଇପଡ଼େ ତେବେ ସେ ବଚସ୍ୱର କି ଗତି କହ? ଅର୍ଥାତ୍ ଶ୍ରୀକୃଷ୍ଣ କପଟି ମତି ଜଣାଅଛୁ । ଆଉ ମୃକୂଳ ବଧୂ ହୋଇ ତାଙ୍କଠାରେ ଅନୁରକ୍ତ ହେବା ଉଚିତ ନୁହେ । ଏହା ମୁ ଉତ୍ତମରୂପେ ଜାଣେ କିନ୍ତୁ ଯେତେବେଳେ ତାହାଙ୍କ ପାଶେ ମୋ ଅଙ୍ଗ ପ୍ରତ୍ୟଙ୍ଗ ଓ ପ୍ରାଣ ସର୍ବେବ ଦର୍ଶି କରି ଦେଇ ଅଛୁ, ସେତେବେଳେ ଆଉ ମୋର କି ବଳ ଅଛୁ କହ ।

୪—ଅମ୍ଭ ଦୁଇଜଣଙ୍କ ଅଧର ସୁଧା ଦୁଇଜଣଙ୍କୁ ପିଆଇ ତହିଁ ଉତ୍ତାରୁ ୧ ଶ୍ରୀକୃଷ୍ଣଙ୍କ ୪ହସ୍ତର ଆଚରଣ କହ ଅଉ ମୋ ଆଗେ ତାଙ୍କ ନାମକୁ ନଧର କିନ୍ତୁ ଉପରୋକ୍ତ ବିଷୟଟି ଗୁ ଥରେମାତ୍ର କରି ଉଦ୍ଧାର କର

୫—ମୋର ୬ଆଜ୍ଞା ଭରସା ୧ଇନ୍ଦ୍ରନୀଳମଣି ତୁଲ୍ୟ ଶ୍ରୀକୃଷ୍ଣଙ୍କଠାରେ ଅଛି । ପର ୩ଅପବାଦ ମୁଣ୍ଡରେ ୪ଠଣାମାଡ଼ କର । ବଲ୍ଲୁକେଶ-ନୃପତି ଏ ରସକୁ ଧରଣୀ ୫ଲୋକାଲୋକ ପର୍ବତ ବେଷ୍ଟିତ ସ୍ଥାନରେ କି ଭୂଲୋକରେ ପ୍ରଗ୍ଟ କଲେ ।

ଅକ୍ଲୁଷ୍ଟଂ ଭବନାଦ୍ଭବନାଦପି ତବ ପ୍ରୋତ୍କଣ୍ଠସୌଧୋଦଭଂ ।
ଯାତାସ୍ମୀତପଦାନ୍ତପାତଜଫଳଂ ଲବ୍ଧଂ ମୟେତଃପରଂ ।
ଅନ୍ୟାପେକ୍ଷିତଶୂନ୍ୟମୀକ୍ଷ୍ୟ ମଧୁରୈ ର୍ଯୁବା ମନୋଽନ୍ୟଦୌତ୍ୟେନ ତତ୍-
ସୌଭାଗ୍ୟଂ ବିତତଂ ମୁଦାନୁଭବତଂ ନାଧ୍ୟାମି ମାଧ୍ୱାବନୀ ।

ହା ହା ଚନ୍ଦ୍ରକଟୂଭାନନ୍ଦନ ଗରିତେ ମାମାପ୍ରତ୍ୟୁମେତ୍ୟବଶିଷ୍ଟାଂ ନ ନିରାକୃତ୍ୟ ପ୍ରତ୍ୟହଂ ପ୍ରତ୍ୟୂହ ପ୍ରତିହନ୍ୟମାନ ମନୋରଥନକ୍ଷଫଳ-ଲାଭାସି ।

ଲଳିତା ।

ରାଗ-ତୋଡ଼ୀ ପରଜ । ଏକତାଳୀ ।

୧ଫାଟିପଡିବାର ୨ନିକୁଞ୍ଜସଂଗ୍ରେ ଶ୍ରମୁଁ ମୋ ଚରଣତଳ । ୩ପରିଭୂଷ-ଣୋର ଅଖରକୁ ହେବାର ଏହୁ ଏକା ଏଥୁଁ ଫଳ କେ । କିଶୋର ।

ଫିଟିଗଲା ଯେ ସନ୍ଦେହ । ଫୁଲିଗଲୁ ଫୁଲଲଲାମ ରାଧିକା ଜାଣି ପରା ଶ୍ୟାମ ସ୍ନେହ ରେ । ୧ ।

୧ଫନ୍ଦାଇ ଜାନା ବନସ୍ତ କହ ଦନ୍ତେ ତୃଣ ଧରିବାକୁ ଗଲା । ଫଛା କପାଳରେ ୨କୁଟିଳହୃଦୟା ବୋଲାଇବା ଲେଖାଥିଲାରେ । କିଶୋର ୩ଫନ୍ଦାଧନ ଛୁଟ ମୋର । ଫେରିଆସ କାହିଁ କହିବ ତୋ ନାମେ ନିନ୍ଦା କଲେ ପଛେ କର ରେ । ୨

ଫରୁଥାଇ ଧନ୍ୟ ୧ଭ୍ରରଜରେ ଭଟ ଭଖ ସେ ୨ନୀଳମଣିକ । ୩ଫଡ଼ିକ ଭୁଲେ କୁଞ୍ଜଦ୍ୱାରେ ରଖାଅ କହ ୪ବଲ୍ଲୀ ଧାଇଣୀକ ରେ । କିଶୋର ଫଇମାସ ମନେ ମନେ । ଫେରିଦଅନ୍ତୁ ସେ ଆଦର ମୁଁ ନେବେ ଯିବା ସେ ଦାଶଙ୍କୁ ଦନେ ରେ । ୩ ।

ଫଳିତ କଦ୍ୱାର ଦ୍ୱାରରେ ଥିଲେ କେବେଳେ ଉର୍ଜିଥିବାଲତ ସତ । ଫେଡ଼ନ୍ତୁ ତୋ ୨କଷ୍ଟ ସୁଖ ଦେଇ ୧ଅଶ୍ରୁଶ୍ରୁତି ଏ ଆମ୍ଭ ବାଞ୍ଛିତ ରେ କିଶୋର । ଫୁରୁଣା ହୋଇଗୁ ରସ । ଫେଗ ଆସେ ମାତ୍ର ଆମ୍ଭ ଅଗେ ନେତ୍ରକଞ୍ଜ ମାର ନବରସେ ରେ । ୪ ।

ଫୋଟକା ହେଉଛି ଶ୍ରୀଅଙ୍ଗେ ସିଞ୍ଚିଲେ କର୍ପୂର ଚନ୍ଦନ ବାଇ ଫୁଙ୍କିଦେଲେ ଉଡ଼ିଯିବା ପରି ପଡ଼ିଅଛନ୍ତି ୧ଚନ୍ଦ୍ରବଲ୍ଲଭା ରେ । କିଶୋର ୨ଫୁତ୍କାର କୋହ୍ନ ଜଗତେ । ୩ଫରୁଆ ନୁହ ଭୁ ବୋଲେ ଜଗଦେବ ହରିଚନ୍ଦନ ଏ ଗୀତରେ । ୫ ।

୧ = ରେ ପୁଷ୍ପଭୂଷା ନାୟିକା ମୋ ଚାଲିପା କୁଞ୍ଜବନକୁ ୨ଯିବାର ପରିଶ୍ରମଯୋଗୁ ୧ଅବଶ ହୋଇ ଯାଉଅଛୁ । ଶେଷକୁ ୩ଭଣ୍ଡିଆ ହୋଇ ଯିବା ଫଳ ମୋ ପ୍ରତି ଘଟିବ । ମୋ ମନରୁ ଧୋକା ଛୁଟିଗଲା ଶ୍ରୀକୃଷ୍ଣଙ୍କର ତୋ ପ୍ରତି ଅନୁରାଗ ଅଛି ବୋଲି ତୋ ଘଡ଼ା କୁଣ୍ଡେ ହୋଇ ଗଲାଣି ଅର୍ଥାତ୍ ତପ୍ତଘୃତରେ କାକରପିଠା ପରି ତୋ ମନଟା ଫୁଲିଗଲାଣି ପରା !

୨ — ହେ କିଶୋରି ଛନ୍ଦ ୧ବନ୍ଦକରି ନାନା ସୌଜନ୍ୟ କଥାଭାଷି ଦାନ୍ତରେ କୁଟା ୫ଧରିବା ପର୍ଯ୍ୟନ୍ତ ଗଲି କିନ୍ତୁ ମୋର ପୋଡା କପାଳରେ ୨ଛଳ ହୁଦ୍ୟା ବେଲି ଲେଖାଥିଲା । ତୁଚ୍ଛ ମୋର ୩ଗଣ୍ଠିଧନ ଅଛି ତୋ ନାମେ କେଉଁଠାରେ ଗୁହାରି କରିବ । ତୁ ପଛକେ ଲୁଚି ଚଳେ କର ଅର୍ଥାତ୍ ଗାଳିଦେଲେ ଦଅ ।

୩ — ହେ କିଶୋରି ତୁ ଯେ ନୀଳମଣିକି ପଣୁଆ ସଦୃଶ ୧କୁଚ-ତଟରେ ପୂରାଇକରି ରଖ । ଅର୍ଥାତ୍ ଯେପରି ଇନ୍ଦ୍ର ନୀଳମଣିରତ୍ନକୁ ପଣୁଆ ମଧ୍ୟରେ ରଖନ୍ତି ତୁ ସେହିପରି ଶ୍ରୀକୃଷ୍ଣଙ୍କୁ ତୋର ପଣୁଆସଦୃଶ ସ୍ତନଦ୍ୱୟ ବେଷ୍ଟିତ କରି ରଖ । ଲତା ୪ଦେବୀଙ୍କୁ କୁହାବୋଲି କରି ୩ସେନ ପରି କୁଞ୍ଜଦୁଆରେ ରଖାଅ । ଯେବେ ମୁଁ ସେହି ଆଡକୁ ଧନେ ଯିବ ତେବେ ସେ ମୋତେ ଫେରାଇ ଦେଉନ୍ତୁ ଏହିକଥା ତୁ ମନରେ କଳ୍ପନା କର ।

୪ — ମୁଁ ବେଯିତ ହୋଇ ଦୂରରେ ଥିଲେ ଦେଲେ ତୋତେ ଧ୍ୟାନ କରିବାର ତ ସତ କିନ୍ତୁ ୧ବିଧାତା ତୋ ମନବାଞ୍ଛା ପୂର୍ଣ୍ଣକରି ତୋ ଦୁଃଖଲି ହରନ୍ତୁ । ଏହି ଆମ୍ଭର ମନକଥା ଅଟେ । ହେ କିଶୋରି ତୁ ନିର୍ଭୟ ହୋଇ ରସ ମଗ୍ନ ଭାଗ୍ୟବଶତଃ ତୋର ଏକଥା ନ ପଡ଼ୁ ଯେ ତୁ ସେଠାରୁ ଆସି ପଦ୍ମନେତ୍ରରୁ ଆମ୍ଭ ଆଗରେ ଲୋତକ ନ ବୁହାଅ, ଅର୍ଥାତ୍ ତୁ ଭଣ୍ଡିଆ ହୋଇ ତୋ ମନବାଞ୍ଛା ପୂର୍ଣ୍ଣ ନ କରି ଫେରିଆସି ମୋ ଆଗରେ କାନ୍ଦନା ।

୫ — ତୋ ଦେହରେ କର୍ପୂର ଆଉ ଚନ୍ଦନପାଣିକୁ ସିଞ୍ଚିଲେ ଫୋଟକା ହେଉଅଛି ତୋ ଅଙ୍ଗ ୧ଲତାକୁ ଫୁଙ୍କି ଦେଲେ ଉଡିଗଲା ପରି ପଡ଼ିଅଛି । ଗୋ ରାଧିକେ ସଂସାରରେ ଏ କଥା ୨ପ୍ରକାଶ ନୋହୁ ତୁ ୩ଭଣ୍ଡିଆ ନୁହ । ଏ ରସରେ ଜଗଦେବ ହରିଚନ୍ଦନ ଭାଷଇ ।

——o——

କୌତୁକାଲ୍ପିତମୀଷଦଷ୍ଟଂ କୌତୁକା ହୃଦ୍ଧ ଦଧାତି ବୟସ୍ୟା ।
ପିଷ୍ଟପେ ମମ ଯଥା ତ୍ୱମହେୟୃା ପିଷ୍ଟପେଷଣଭୟୃାନ୍ନ ବଦାମି ।

ରସିକାଃ ପ୍ରାଣାଧିକାଂ ତ୍ୱାଂ ବିନା କ ନଗର୍ଯ୍ୟାଂ ମହୁର୍ତ୍ତ ନୈଷ୍ଠୁର୍ଯ୍ୟ ହାଦାନପର୍ଯ୍ୟାଲୋଚନ ଗୃତୁର୍ଯ୍ୟଧୂର୍ଯ୍ୟାକା । ବନାଭୀରକନ୍ୟାସ୍ତ୍ରୀତଧୈର୍ଯ୍ୟ ମବଲମ୍ବ୍ୟ ଯଦୁକ୍ତମନୁଚିତଂ ତଦ୍ବାସ୍ତ୍ବଂ ତବାଗତ୍ୱାଂ ଗତ୍ୱା କୁହଚନ୍ଦ୍ରସ୍ମ ଲୀସୃଯୌବତଜୀବନାନ୍ତଯାତନାଯାତମାନ ତଟାକ୍ଷଲୀଲସ୍ୟାପିତସ୍ୟଶ- ଶୃଣିଖଣ୍ଡମଣ୍ଡିତଶେଖରସ୍ୟ ଭ୍ରମଣରମଣୀୟୃାୟୃା ଭୁବଃ ସୁଷମାବଲୋକୟି ଷ୍ୟାବ ଇତବତମ୍ୱିସ୍ଥଳକଦମ୍ବବିଜୟୃତମ୍ ମାତମ୍ବରଚରଣମଣ୍ଡନରମ୍ୟଂ ହ- ସ୍ତକଦମ୍ବକୁଞ୍ଜକାନନାନ୍ତର୍ବିଚରତୁଃ ।

ରାଧା ସହାୟ ।

ରାଗ ସାବେରୀ । ଆଠତାଳୀ ।

୧ହରକ୍ଷଣାରେ । ବିନାତୋପ୍ରୀତି କେ ଗଢ଼ା ଅଛୁ ୨ଜଗତରେ । ପଦ ।
ବୋଲ ଦେଲ ସିନା ଗେଲେ ହସି । ଭଣ୍ଡ ତୋ ସମେ ନାହିଁ ଦୋଷାଯୀ । ବାନ୍ଧିବାକୁ ମୋ ମନ ତୁ ୧ଫାଶୀ । ବିଶେଷରେ ମୋ ୨ହୃଦା- ନ୍ତର ତୋତେ ଜଣାରେ । ୧ ।

ବିକେ କଣେ ଯେ ଯାହାକୁ ସ୍ନେହେ । ବଣ ତାଠାରୁ ଜୀବନ କୋହେ । ବଳ ତାହାଠାରେ ସିନା ସହେ । ୧ବହୁରଙ୍ଗେ ରହି ବୁଲୁ ଛନ୍ତି ୨ଅଗଣାରେ । ୨ ।

୧ବିଶ୍ୱମ୍ଭରଜ-ଖେଳାକାଳୁଁ । ଭଦ୍ର ପ୍ରାଣ ପରି ୨ପରିପାଳୁ । ବିଧିବଶୁ ୩ନିସର୍ଗ କୃପାଳୁ । ବନେ ଧେଉଛୁ ଏହି ୪ଉତ୍ତମ ବାଜଣା ରେ । ୩ ।

ବୋଲେ ୧ବସୁନ୍ଧରର ମଧବା । ବଲ୍ଲୀନିକଟକୁ ଚାଲି ଯିବା । ବଂଶୀ ଗୀତ ପୀୟୂଷ ପିଇବା । ୩ ଦ୍ଭୁବର୍ଗ ନ ପାହୁଁ ଅଇବା ଅଙ୍ଗଣରେ ।୪।



ଅର୍ଥ—ରେ ୧ପଣ୍ଡିତା ତୋ ସ୍ନେହ ବନା ୨ପୃଥିବୀରେ ଆଉ କି ଉପାୟ ଅଛି ?

୧ —ମୁଁ ପରିହାସରେ ହସିଦେଇ କହିଦେଲି ସିନା, ସେଥିରେ ତୋ ପରି ବିଶ୍ୱାସୀ ନାହିଁ । ମୋ ଚିତ୍ତକୁ ବନ୍ଧନ କରିବାକୁ ତୁ ଫାଂସି ୧ଫାନ୍ଦ ଅଟୁ । ତୋତେ ମୋ ମନର ୨ବାହାର ଭିତର ଜଣା ଅଛି ।

୨ —ଯେ ଯାହାକୁ ପ୍ରୀତିରେ ବୋଲେ ଓ ଜଣେ ପ୍ରାଣ ତାଠାରୁ ଉତ୍କୃଷ୍ଟ ନୁହେ । ଏଭଳିଆ ପାତ୍ର ଠାରେ କଥା ସିନା ରହେ । କେତେ ଅସ୍ମାର ଅର୍ଥାତ୍ ୨ଅସଂଖ୍ୟ ୧ପ୍ରୀତିହୀନଲୋକ ବାହାରରେ ବୁଲୁ ଅଛନ୍ତି ।

୩ —ଶୈଶବାବସ୍ଥାର ୧ଧୂଳି ଖେଳ ସମୟରୁ ଜୀବନ ସଦୃଶଙ୍କର ମୋ ପ୍ରତି ୨ବ୍ୟବହାର କରିଥିଲୁ । ଦଇବ ଯୋଗରୁ ୩ପ୍ରକୃତରେ ଦୟାଳୁ ଅଟୁ । ଏହି ୪ନାଗରୀ ଗୋପପୁରଯାକ ବାଜୁଅଛି ।

୪ —୧ଅଠଗଡର ଇନ୍ଦ୍ର ଭାଷଇ ଅମୃତତୁଲ୍ୟ ମୁରଲି ଗୀତକୁ ପାନ କରିବାକୁ ଚାଲ ୨କୁଞ୍ଜବନକୁ ଯିବା ୩ଯାହିଁ କପାହୁଁ କେହି ନଦେଖୁଣ ସେଠାରୁ ବାହାର ଆସିବା ।



କୁଲାଦ୍ରିସ୍ଥୈର୍ଯ୍ୟବ୍ୟସ୍ତକରଣଧୂର୍ଯ୍ୟସ୍ଥି ତଲବୋ-
ଦଧନ୍ତୀପାଭ୍ୟସେ ଭୁବନନୟନଃ ସେଚନକତାଂ
ହରଃ ସୋଽୟଂ ଜ୍ଞାଲାମ୍ବୁଦନଭଞମାଲାଗମରୁଚଃ ।
ଲତସ୍ତ୍ରୈର୍ଯ୍ୟନ୍ୟାସଂ ଗତନମିଷଯ୍ୟା ସଂପିବ ଦୃଶା ।

ଇତି ବଙ୍କାପ୍ୟରାଧାଙ୍ଗସୌରଭଲବ୍ଧାରବ୍ଧାନଙ୍ଗମଙ୍ଗଳସଙ୍ଗୀତମଧୁକରନିକରବିଜାତୀୟବଲାସପୂର୍ଣ୍ଣବକୁଞ୍ଜପୁଞ୍ଜମାମୃନଂ ହରେର୍ଲୋଚନଗୋଚରୀକୃତ୍ୟ କୁସୁମନଚସ୍ପାବଚୟସମୁଦ୍ୟମା ଭିନୟେନ ତତୋ ଲବ୍ଧକାନ୍ତରଂ ପ୍ରତିସ୍ଥଲଚାୟ୍ୟାଂ ଲଳିତାୟାଂ ।

## ଲଳିତା ।

### ରାଗ କେଦାରଗୌଡ଼ା । ତାଳ ତ୍ରିପୁଟା ।

୧ଭଙ୍ଗୀ ଗୃହୀ । ଭ୍ରୂରୁ ନୀଳ ୨ଭୁଜଙ୍ଗୀ-ଭ୍ରମରଜୀବସଙ୍ଗୀ । ପଦ ।

ଭାଗ୍ୟ ଏ ଜନ ଆଖି ୩ଜନନରଛି ସଖି ଜାଣରେ । ଭରମି ଭୁ ନ ଯା ୨ମନ୍ମଥବାଣ ରେ । ଭୂଜପାଶକୁ ଛନ୍ଦ ମୋ ଗଲେ । ଭଡ଼ ପାଦ କଞ୍ଜ ଖଞ୍ଜ ଧରଣୀତଳେ । ଭୂମଣ୍ଡନାରେ । ପଦ । ଭଲ ମାନୁଛୁ ଦେଖ ୩ସୁଧାମୟୂଖମୁଖ ୪ଅଲକାତଳି ୫ଅଖଣ୍ଡିତ ୬ଗୋରଚନାରେଖ ତିଳକେ ଦୃଷ୍ଟି ରଖ ସଖିରେ । କ ବଶେ ୭ଚଳାଚଳ ଗୃରୁ ୮ଚନ୍ଦ୍ରିକରୂଳ । ୧ ।

୧ଭର୍ତ୍ସିତ ୨ନବରବି କୁଣ୍ଡଳଯୁଗ ଛବି ଗଣ୍ଡରେ । ୩ଭହୁର ଏହି ୪ବିବେକ ମୁଣ୍ଡରେ । ୫ଭବ୍ୟଦାୟକ ମାଣିକ୍ୟବର । ଭ୍ରମ ଜାତ କରୁ- ଅଛୁ ୬ମଧୁରାଧର । ୭ଭୂମଣ୍ଡନାରେ । ପଦ । ୮ଭୂତଭୂଷାବପଯ ୯ପ୍ରକ୍ଷେ- ପନରୁ ତୀକ୍ଷ ଏ କିଶୋର-କଟାକ୍ଷ କେବଳ ଏହା ଲକ୍ଷ୧୦କନକାଚଳବକ୍ଷ ସଖିରେ । କହ ବଡ଼ୁର ଚଉେ ଯୁବତି ଧୃତି କେତେ । ୨ ।

୧ଭଙ୍ଗୀକମ୍ବୁରେ ଉଭା ହେବାର କେତେ ଶୋଭା ପ୍ରକାଶେ । ୨ଭରାଜି କ ହାର ସେ ବକ୍ଷ-ଆକାଶେ ୩ଭର୍ଗ ୪ସମାଧି ଭଙ୍ଗ କରିବ । ଭଲେ ଏହା କରକମଳ ବଂଶୀରବ । ଭୂମଣ୍ଡନାରେ । ପଦ । ଭୂଷୁଡ଼ କଟି ସତୀବ୍ରତ ନୟମ ୫ଧୃତ ଶ୍ରୀଅଙ୍ଗ ଶୋଭା ୬ଅତରଭ ନାୟକ ୭ଦୂ୍ୟତ ୮ମଦଦ୍ୱିରଦଗତି ସଖିରେ ! ଶୋଭାନିଧି ତୋ ଗାଲ ନ ୯ଚୁମ୍ବୁ ଶ୍ୟାମନେହ । ୩ ।

ଭୂଷିଲେ ୧ ଅଷ୍ଟଦୁର୍ଗ ୨ ଛିତ କପଟସ୍ୱର୍ଗ ୩ ମଘବା । ଏ ଶୃଙ୍ଗାରରସ ବରଷେ ମେଘ ବା । ୪ ଭୃତ୍ୟପଣରେ ହେଲେ ଏହାର । ଭୁଜ ୫ଭୁଜଙ୍ଗେନ୍ଦ୍ର କରନ୍ତା କଣ୍ଠେ ହାର । ଭୂମଣ୍ଡନାରେ । ପଦ । ଭଜିଥାନ୍ତ ରଜନୀ ଦିବସେ ପିକଦାନୀ ଖଟି ଏ କୃପା ଦେଲେ ସ୍ୱାର୍ଥ କରନ୍ତା ୬ଜନୀ ଶତ ୭ଜଳଜଯୋନି ସଖି ରେ ! କରିବେ ଅନୁଗ୍ରହ ଏ ମୋହନ ୮ବିଗ୍ରହ । ୪ ।

ଏ ଶ୍ରୀକୃଷ୍ଣଙ୍କର ୨ ନୀଳସର୍ପିଣୀ ସଦୃଶ ଭ୍ରୂଲତାରେ କଳା ଭ୍ରମର ସଦୃଶ ଡୋଳା ଉପର ମିଳିରହି ଖେଳାକରେ ଏ ୧ଠାଣିକି ଅନା । ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଭ୍ରୂଲତା ଗୋଟିଏ ନେଳୀସ୍ପା ସାପପରି ହେଲା । ତାଙ୍କର ଆଖିର ଡୋଳା ଗୋଟିଏ କଳା ଭଅଁରପରି ହୋଇଅଛି । ଏ ଦୁହେଁ ଏକ ଯୋଗରେ ଏକତ୍ରହୋଇ ରହି ଖେଳା କରୁଅଛନ୍ତି, ଏ ଯେଉଁ ଆଶ୍ଚର୍ଯ୍ୟ ଘଟଣା ତାକୁ ଚାହାଁ । ପ୍ରକାଶ ଥାଉ ଯେ ଲତା ଶବ୍ଦ ସ୍ୱାଭାବିକ ସ୍ତ୍ରୀ ଲିଙ୍ଗ ଯୋଗେ କବି ମହାଶୟ ଭୁଜଙ୍ଗୀ ଶବ୍ଦ ବ୍ୟବହାର କରିଅଛନ୍ତି ।

୧ = ଗୋ ରାଧିକେ, ଯେ ମନୁଷ୍ୟ ଆଖି ଏହା ଦେଖି ଅଛି ସେହି ଆଖି ଓ ସେହି ମନୁଷ୍ୟର ( ଜନ + ଅଜ ) ଜନନ କ ୧ ଜନ୍ମ ହେବାର ସାର୍ଥ ଅଟେ । ଏହା ତୁ ଜାଣିକରିଥାଅ । ରେ ଧରଣୀଭୂଷା ତୁ ୨କନ୍ଦର୍ପ ଶରରେ ବାସ୍ତୁଣୀ ହୋଇ ନଯା । କେଜାଣି କାଳେ ତୁ ଭୂଲିଯାଇପାରୁ ୬ତେବେ ମୋ ବେକରେ ତୋ ହାତକୁ ବେଢ଼ାଅ । ଆଉ ପୃଥିବୀରେ ତୋ ପାଦପଦ୍ମକୁ ଚପିକରି ରଖି ୩ଚନ୍ଦ୍ରମଣି କପରି ଘଟଣା ହେଉଅଛି ଦେଖ । ଗୋସଖି ୪ଘୂର୍ଣ୍ଣିକୁନ୍ତଳ ତଳେ ୫ଖୁଣାହୀନ ଯେଉଁ ଗୋରଚନା ଚିତା ତାକୁ ଟିକିଏ ଚାହାଁ । ୭ଅତିଚଞ୍ଚଳଭାବରେ ହଲୁଚି, ଏପରି ମନୋହର ମୟୂର ୮ପୁଚ୍ଛର ଚୂଳ କିପରି ହେଉଛି ତାକୁ ମଧ୍ୟ ଚାହାଁ ।

୨ = ୨ବାଳ ସୂର୍ଯ୍ୟଙ୍କୁ ୧ନିନ୍ଦା କରୁ ଅଛି ଗାଲରେ ଯେଉଁ କୁଣ୍ଡଳ ହସ୍ତ ହୋହଲୁଚି ସେହି ଶୋଭାକୁ ଚାହାଁ । ଏହି ଟି ୪ ବାଗୁଲ ମୁଣ୍ଡରେ ୩ବଜ୍ରମରି ଅଟେ ଅର୍ଥାତ୍ ଏ କୁଣ୍ଡଳର ଶୋଭାକୁ ଚାହିଁଲେ ଲୋକର ହତାହତ ଜ୍ଞାନ ନରହେ । ୫ସେ ଶ୍ରୀକୃଷ୍ଣଙ୍କ ମନୋହର ଓଷ୍ଠ ୬ ସମ୍ପତ୍ତି ଦାୟୀ ଶ୍ରେଷ୍ଠ ମାଣିକ୍ୟ ବୋଲି ମନରେ ଭ୍ରାନ୍ତି ଜାତ କରୁଅଛି । ଅର୍ଥାତ୍ ସେ ୭ଓଷ୍ଠକୁ ଦେଖିଲାମାତ୍ରକେ ଏପରି ଭାବ ଉଦୟ ହେଉଅଛି ଯେ ଯେପରି ଗୋଟିଏ ଉତ୍କୃଷ୍ଟ ମାଣିକ୍ୟ । ରେ ୭ ମହୀମଣ୍ଡଳା; ଏ

ଶ୍ରୀକୃଷ୍ଣଙ୍କ ବାଙ୍କଚାହାଣି ପଉଁଯ ବୋଲିହୋଇ ଥାନ୍ତି ଯେ ମହାଦେବ ତାଙ୍କ ଶତ୍ରୁ ଯେ ୮ କନ୍ଦର୍ପ ତା ୯ଶରଠାରୁ ମୂନ୍ଥାଁ ଅଛେ ଏହି ଶର କେବଳ ସୁବର୍ଣ୍ଣ ପଙ୍କଜ ସଦୃଶ ତୋହର ବକ୍ଷସ୍ଥଳରେ ଥିବା ୧୦କୁଚକୁ ଲକ୍ଷ କରୁଅଛୁ ଅର୍ଥାତ ସେ ବାଙ୍କଚାହାଣି କେବଳ ତୋର ସେ କେବଳ କୁଚକୁ ଅଛେ । ହେ ସଖି ତୁ ମନରେ ବୁଝି କହ ସ୍ତ୍ରୀ ମାନଙ୍କ ଦମ୍ଭ କେତେ ମାତ୍ର ।

୩ = ପାଦ ଛନ୍ଦ ୧ତ୍ରିଭଙ୍ଗିରେ ଦଣ୍ଡାୟମାନହେବା କିପ୍ରକାର ସୁନ୍ଦର ଦିଶୁଅଛୁ । ତାହାଙ୍କର ନୀଳବର୍ଣ୍ଣ ଛାତିରେ ଯେଉଁ ହାର ରହିଅଛୁ ତାହା ନୀଳ ଆକାଶରେ ୨ନକ୍ଷତ୍ର ପନ୍ତି ବୋଲିଜଣାଯାଉଅଛୁ । ଏହାଙ୍କ ହସ୍ତପଦ୍ମରେ ଧରିଥିବା ବଂଶୀକୁ ବଜାଇଲେ ୩ ଶିବଙ୍କର ୪ ଧ୍ୟାନ ଭାଙ୍ଗିଯିବ । ରେ ସମ୍ମାନଶୂନ୍ୟା ! ରେ ମତ୍ତଗଜଗମନୀ ସଖି ! ରେ ଲାବଣ୍ୟନିଧି! ଶ୍ରୀକୃଷ୍ଣ ତୋତେ ନଦେଖୁଣୁ ତାହାଙ୍କର ୫କନ୍ଦର୍ପ ଶୋଭାକୁ ବଳି ଶ୍ରୀଅଙ୍ଗର ୬କାନ୍ତିକୁ ଦେଖିଲେ ସମସ୍ତଙ୍କ ସତୀପଣିଆଁ ଖସିଯିବ । ଅର୍ଥାତ ତୁ ପରଘରଣୀ ହେଲେ ସୁଦ୍ଧା ତୁ ତାଙ୍କୁ ଦେଖିଲେ ତୋହର ସ୍ୱାମିକୁ ନଭଜି ତାଙ୍କୁ ଭଜିବୁ ।

୪ = ୧ଅଠଗଡ଼ ୨ପୃଥ୍ୱୀ ଗୋଟିଏ ବଧୂଜରେ ସ୍ୱର୍ଗ ହେଲା ଯେହି ସ୍ୱର୍ଗର ୩ ଇନ୍ଦ୍ର ସ୍ୱରୂପ ଅଠଗଡର ରାଜା ଭଣିଲେ । ଏତେବେଳେ ଯେଉଁ କନ୍ଦର୍ପ ବିକାର ହେଉଅଛି ବୋଧହୁଏ ଯେପରି ମେଘ ଅବା ବରଷାଧାରା ସଦୃଶ ମାର ବିକାରକୁ ବୃଷ୍ଟି କରୁଅଛି କି ? ୫ ବାସୁକି ଏହାଙ୍କର ୪ ଶୃଙ୍ଗାର ରୂପ ହୋଇ କର ରହି ଏହାଙ୍କ ହାତକୁ କଣ୍ଠରେ ହାରକର ବହନ୍ତା କାରଣ ତାହାଙ୍କ ହସ୍ତସଙ୍ଗେ ବାହୁକ ସମାନ ନୁହେଁ । ୭ବ୍ରହ୍ମାଙ୍କୁ ଯେତେ ପିକବାଣୀ ଧନ ଦିବାରାତ୍ର ଗଢିଥିବା ସ୍ୱକାଶେ ନିର୍ଲୁମ କରିବେ ତେବେ ସେ ବ୍ରହ୍ମା ଏହି ଦର୍ପୀପାଇଁ ତାହା

ଙ୍କର ୬ଜନ୍ମକୁ ସ୍ୱାର୍ଥ ମନେ କରିବେ । ରେ ସଖି ! ଏ ମନୋହର ୮ମୂର୍ତ୍ତି୯ ତେ, ପ୍ରଭୁ ନିଶ୍ଚୟ ଅନୁଗ୍ରହ ପ୍ରକାଶ କରିବେ ।

ପ୍ରାପଶ୍ଚିକାନ୍ତତମସୀନ୍ଧୁ ପିଚଣ୍ଡପାତାତ୍
ପ୍ରାସ୍ୟଃ ସମାକୁଳବିବେକଦୃଶାଂ ଜନାନାଂ ।
ଗ୍ରୀମୀକରପ୍ରକରପାତମୟୂଖଲେଖା
ନୀଲୋତ୍ପଲାଂଶୁମୟୁମସ୍ତ୍ୟବନାୟୁ ତେଜଃ ॥

ଷାଷ୍ଟୁପଭୁକ୍ତିକ୍ଷିପ୍ତାଂ ମାଲମିବ ଷାଣୋଲ୍ଲୀଲାଂ ମଣିମିବତମସାଗ୍ରସ୍ତାଂ ଦ୍ୱିଜୈଦ୍ଧାଂଚନ୍ଦ୍ରିକାମିବ ଗଜେନ୍ଦ୍ରଦଳଡୋର୍ଜିତାଂ ସରୋଜିନୀମିବମୃଗେନ୍ଦ୍ରଗୃହୀତୋନ୍ମୁକ୍ତାଂ ମୃଗୀମିବନଙ୍ଗସଞ୍ଚାରମଙ୍ଗଲ ମହୋତ୍ସବାତ-ଶାୟ୍ୟାୟୃତ୍ତାଂଭୂୟ୍ୟସ୍ତାମଙ୍କମାରୋପ୍ୟ କୃଷ୍ଣଃ ।

ରାଗ ମଲ୍ଲୁଆ । ତାଳ ଝିପୁଟ୍ଟା ।

୧ମଧୁରେ । ମନ୍ଦ ମନ୍ଦ ହୋଇ ୨ଗନ୍ଧବହ ୩ପ୍ରସରିଲା କଦମ୍ବନିକୁଞ୍ଜ ୪ସୀମାରେ । ୫ମରନ୍ଦ ୬ସେକେ ଚମକି ଲୋକେ ଭାସିଲେ ୭ଇଷି-ମାରେ । ୮ମିଲନ୍ତି ଲତା ଦମ୍ଭ ବହନ୍ତା ବଦନେ ମିଶିମାରେ । ମଣ୍ଡିତ ୯ହେଲା ସେ ବନସ୍ଥଳ ୯ମହାରଜତ ୧୦ମହେନ୍ଦ୍ର ନୀଳ ମୟୂଖଶୋଭି ମୟୂ ୧୧ମଞ୍ଜରୀ ବିଷର ୧୨ସୁଷମାରେ । ପଦ ।

ମିଶିଲା ଚୂଡ଼ ନୟନ ୧ବାଉରୁହ ବଦନ ଲଭିଲ। ବାରି ମିଳନ୍ତି ଶ୍ୟାମ ଗଉର ଦୁଇମୁହଁ । ୨ମଧୁପଯୁବା ଲଭିଲା ଅବା ୩ନବସରସୀରୁହ ମାନସ ଅଙ୍ଗଭେଦ ପ୍ରସଙ୍ଗ ଭଙ୍ଗୀରଚିଲା ସ୍ନେହ । ୪ମଉଳିଗଲା ସେହ ୫ସାତ୍ତ୍ୱିକ ୬ମୃତ୍ତବଇସୀ ସଂଖ୍ୟକ ଯାକ ମଜ୍ଜାଇ ଦେଲା ଦୁହିଁଙ୍କମନ ୭ମହାମୋଦ ପ୍ରବାହେ । ୧ । ମଢ ଦ୍ୱିରଦ ମଥିତ ହ୍ରଦ ମୂର୍ଚ୍ଛିତ ମହୋତ୍ପଲ ଅମୋଦ ଫୁଲ ପରାଗ ପରି ଶ୍ରୀଅଙ୍ଗ ବାସେ । ମୃଗଲାଞ୍ଛନ-ମରୀଚ ପୂର୍ତ୍ତି ଧାବଲ୍ୟ ପରିକାଶ । ମଧୁ ମାଦକ ଗୁଣ ସୂଚକ କୋକିଳ କଳ ଘୋଷ ମଣିମଣ୍ଡିତ ମଞ୍ଜୁମଞ୍ଜୀର ଭୂଷା ଶିଞ୍ଜିତ ରସନାହାର ଚଳାଚଳ ପରିକଟି ଶ୍ରବଣେ କଲା ବିବେକ ମୋଷ । ୨ ।

ମଧୁମଧୁର ବଧୂଅଧର କିଶୋରବର ଦଶନାମ୍ବର ବିମ୍ବ ଚୁମ୍ବନ ଚୁଁକୁ-
ଛନ୍ଦନ ମେଳା । ମୃଦୁ ମନ୍ଥନ ଧ୍ୱନି ଜନନ କଲାଟି ଯହୁଁ ଖେଳା ।
ମହେନ୍ଦ୍ରମଣି ବଳୟଶ୍ରେଣୀ ରହିଲା ହୋଇ ଲୋଳା । ମନୋଜ୍ଞକଣ୍ଠୁଁ
ପୀୟୂଷମୟ ମିଶ୍ରିତ ହେଉ ସେହି ସମୟ ମାର ମହତ୍ତ୍ୱ ଗଲା କି ନାହିଁ
ହେଲା ସଂଶୟ ଲୋଳା ।୩। ମନ୍ଦାରବନ ସେ ବନରସାଗନ୍ଧେ ରଚିଲା ସ୍ୱନ
କରିପାରିଲେ ସର୍ବ ଗନ୍ଧର୍ବମାନେ ଗାନେ । ମାଞ୍ଜି ତାଣ୍ଡବ ରଚିଲେ
ଦେବ ଦାସୀଏ ସାବଧାନେ । ମର୍ଦ୍ଦଳ ଘୋଷ ହେଲା ତ୍ରିଦଶ ମଣ୍ଡଳେ
ସବୁସ୍ଥାନେ । ମୁକତି ପ୍ରାପ୍ତ ହେଲା ତ୍ରିଲୋକ ମାନସୁଂ ମ୍ଳାନ କଲେ
ପାଠକ ଶ୍ରୀ ଜଗଦ୍ଦେବ ସେ ମହୋତ୍ସବ ବାଞ୍ଛିଲି ଧ୍ୟାନେ ଗାନେ । ୪ ।



ଅର୍ଥ-ବସନ୍ତ ୧କାଳରେ ୨ପବନ କଦମ୍ବ ବନ ୪ ସୈଅନ୍ତରେ ଧୀର
ଧୀର ହୋଇ ୩ବହିଲା । ୫ପୁଷ୍ପର ୬ରେଣୁପତନରେ ମନୁଷ୍ୟମାନେ
"୭ମାଲୋ ! ଇଷି" ବୋଲି ଚମକି କହିଲେ । ୮ଭ୍ରମର ସ୍ତ୍ରୀମାନଙ୍କର
ପତିବ୍ରତା ବଳ ସଦୃଶ ଲତା ମୁଖରେ ବସି ଝଙ୍କାର କଲେ । ସେ ବନ-
ଦେଶ ବୃକ୍ଷ ୧୨ସମାନରେ ୯ସୁବର୍ଣ୍ଣ ଓ ଇନ୍ଦ୍ର ୧୦ନୀଳମଣି କିରଣ
ଶୋଭା ବଶିଷ୍ଟ ୧୧କଳିମାନଙ୍କର ଦ୍ୱାରା ପ୍ରସରିଲା ଯେ ଅତ୍ୟନ୍ତ ଶୋଭା
ତହିଁରେ ବନସ୍ଥଳି ମଣ୍ଡିତ ହେଲା । ଯେତେବେଳେ ରାଧା ଓ କୃଷ୍ଣଙ୍କର
ମିଳନ ହେଲା ସେତେବେଳେ ବସନ୍ତକାଳ ହୋଇଗଲା । କୁଞ୍ଜବନ
ମାନଙ୍କରେ ପୁଷ୍ପ ଫୁଟିଲେ ଓ ଧୀର ଧୀର ହୋଇ ବାୟୁ ବହିବାରୁ ଫୁଲ
କେଶର ସବୁ ପଡିବାରୁ ମନୁଷ୍ୟମାନେ ଚମକି ଉଠି ବୋଲି କହିଲେ
ଅର୍ଥାତ୍ କନ୍ଦର୍ପର ବାଣପରି ପୁଷ୍ପ ରେଣୁ ହେଲା ।

୧—ରାଧାକୃଷ୍ଣଙ୍କର ଦୃଢ଼ଆଶ୍ଲେଷ ହେବାକୁ ଦେଖା ଦେଇ ହେଲେ ।
କାଳିଆ ଓ ଗୋରା ଦୁହିଙ୍କ ମୁହିଁ ମଧ୍ୟ ଲାଗିଗଲା । କେବଳ ୧ପଦ୍ମମୁଖ
ଦ୍ୱୟ ବାହାର ହୋଇ ପଡିଲା । ରାଧାଙ୍କର ସ୍ୱର୍ଣ୍ଣ ପଙ୍କଜ ପ୍ରାୟ ଓ କୃଷ୍ଣଙ୍କର

ନୀଳପଦ୍ମ ପ୍ରାୟ ମୁଖ ହେବାରୁ ବାଛି ହୋଇ ପଡିଲା । ୨ଭଅଁର ଭେଂଶ୍ରିଆ ଜନୁଅଫୁଟିଥିବା ପଦ୍ମକୁ ପାଇଲା କି ? ଉଭୟଙ୍କର ସ୍ନେହ ଦେହକୁ ଦେହ ମିଶିବା ସମ୍ବନ୍ଧୀୟ ଢ଼ଙ୍ଗକୁ ହୃଦୟରେ ଜାତ କଲା । ୬କନ୍ଦର୍ପର ଅଷ୍ଟ ୫ସାତ୍ତ୍ୱିକ ଭାବଯାକ ୪ଗ୍ରହିଲା । ଦୁଇଜଣଙ୍କ ମନ ଅତିଶୟ ଆନନ୍ଦ ୭ସ୍ରୋତରେ ବୁଡିଗଲା । ଅଷ୍ଟ ସାତ୍ତ୍ୱିକ = ( ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ଅଶ୍ରୁ, ବୈସ୍ୱର୍ଯ୍ୟ, ବେପଥୁ, ବୈବର୍ଣ୍ଣ ପ୍ରଳୟ ( ମୂର୍ଚ୍ଛା )

ବିଷଦ ବ୍ୟାଖ୍ୟା

ରାଧାକୃଷ୍ଣଙ୍କ ମିଳନ ବେଳେ ଏପରି ଭାବରେ ଉଭୟେ ଜଡ଼ାଜଡ଼ି ହେଲେ ଯେ ଚୂଳଠାରୁ ମୂଳ ପର୍ଯ୍ୟନ୍ତ ଦୁହିଙ୍କ ଦେହ ଏକ ହୋଇଗଲା କେବଳ ଗୋରା ଓ କଳାମୁହଁ ପୃଥକ ରହିଲା । ଭ୍ରମର ଗୋଟିଏ ସଜ ପଦ୍ମଫୁଲକୁ ପାଇଲେ ଯେପରି ପ୍ରେମାନ୍ଧ ହୋଇ ତାହା ଚତୁଃପାର୍ଶ୍ୱରେ ଭ୍ରମଣ ନ କରି ଏକାବେଳକେ ତହିଁରେ ବସି ମଧୁପାନ କରେ ସେହିପରି ରାଧାକୃଷ୍ଣଙ୍କ ମିଳନ ସମୟରେ ତାହାଙ୍କର ସ୍ନେହ ଏପରି ବୃଦ୍ଧି ହୋଇଥିଲା ଯେ ଦୁଇଜଣ ପୃଥକ ହୋଇ ଠିଆହୋଇ ପ୍ରଥମେ ପ୍ରେମ ସମ୍ଭାଷଣକୁ ହୃଦୟରୁ ଭୁଲିଗଲେ । ଏବଂ ପ୍ରଥମ ଦର୍ଶନରେ ଦମ୍ପତିଦ୍ୱୟଙ୍କର କନ୍ଦର୍ପପୀଡାଜନିତ ଯେଉଁ ୀଦେହ ଥର ଓ ଝାଳ ପ୍ରଭୃତି ହୁଏ ତାହା ନ ହୋଇ ଏକାବେଳେ ପ୍ରୀତିର ଚରମ ସୀମାରେ ଉପସ୍ଥିତ ହେଲେ ।

୨— ପଦ୍ମ ହ୍ରଦକୁ ଘାଣ୍ଟି ବାହାରି ଆସିଥିବା ମତ୍ତହାତୀ ହାତୀ ଦେହରୁ ଯେପରି ପଦ୍ମଫୁଲର ବାସନା ବାହାରେ ସେହିପରି ଶ୍ରୀକୃଷ୍ଣଙ୍କ ଦେହ ବାସୁଥିଲା । ଅର୍ଥାତ୍ ରାଧା ପଦ୍ମିନୀ ଶ୍ରେଣୀୟ ସ୍ତ୍ରୀ ଅଟନ୍ତି । ସେତେବେଳେ ଚନ୍ଦ୍ର କିରଣଦ୍ୱାରା ପୂର୍ଣ୍ଣ ଭାବରେ ଧବଳତା ପ୍ରକାଶ ହୋଇଥିଲା । ମନୋହର ଉନ୍ମାଦ ଗଣକୁ ଜାତ କରାଇ ଦିଏ କି ସୃଷ୍ଟିପାତ କରାଏ, ଏପରି ଯେ କୋଇଲିଙ୍କର ମିଷ୍ଟ ୨ ସ୍ୱର, ବହୁମୂଲ୍ୟ ପ୍ରସ୍ତର ଭୂଷିତ

ମନୋହର ନୂପୁର ଅଳଂକାରର ଧ୍ୱନି; ଓ କଙ୍କିଣୀର ଶବ୍ଦ, ପ୍ରକାଶ ହେବାରୁ ଲୋକେ ଏହାଙ୍କୁ ଶୁଣିବାରୁ ତାହାଙ୍କର ହୃତାହତ ବିବେଚନା ରହିଲାନାହିଁ ।

୩—ଯହୁଁ ମହୁପରି ମିଠା ଅଟେ ଯେ ଶ୍ରୀ ରାଧାଙ୍କର ଓଷ୍ଠର "ଚୁ" କାର ଶବ୍ଦ ଓ ଶ୍ରୀକୃଷ୍ଣଙ୍କ କର୍ଣ୍ଣଶଷ୍କୁଳୀ ସଦୃଶ ଓଷ୍ଠର ଚୁମ୍ବନ ଦେବା ସ୍ୱର ମିଶିଲା, କ୍ରୀଡ଼ାସମୟରେ ଯେଉଁ ଅଳ୍ପ ଗଦ୍ଗଦ ଶବ୍ଦ ଜାତ ହେଲା, ଇନ୍ଦ୍ର ନୀଳମଣି କଙ୍କଣ ସମୂହ ଚଞ୍ଚଳ ହୋଇ ବାଜିଲା ଏବଂ ଏମାନଙ୍କ ସହିତ ଅମୃତ ତୁଲ୍ୟ ପ୍ରିୟ ଚାଟୁବାକ୍ୟ ମିଶିବାରୁ ବେଧହେଲା ଯେ, କନ୍ଦର୍ପର ଆଶା ଭାଙ୍ଗିଲା କି ରହିଲା, କିଛି ଜଣାଗଲା ନାହିଁ ।

୪—ସେ ବନ ପ୍ରଦେଶରେ ସ୍ୱର୍ଗୀୟ-ତରୁରୁ ଫୁଲ ବର୍ଷିଲା, ସର୍ବ ଗନ୍ଧର୍ବମାନେ ଗାନକଲେ, କିନ୍ନରୀମାନେ ମତ୍ତ ହୋଇ ସାବଧାନରେ ନୃତ୍ୟ କଲେ । ସ୍ୱର୍ଗରେ ସକଳସ୍ଥାନରେ ପଖାଉଜ ବାଜିବାରୁ ସମସ୍ତ ସ୍ୱର୍ଗମଣ୍ଡଳ ସ୍ତବ୍ଧ ହୋଇଗଲା ଏବଂ ତ୍ରିଲୋକବାସୀଙ୍କ ମନରୁ ପାପ ଦୂର ହେଲା । ଶ୍ରୀ ଜୟଦେବ ସେ ମହୋତ୍ସବକୁ ଧ୍ୟାନ ଓ ଗାନ କରିବାକୁ ବାଞ୍ଛାକରେ ।

ଅଦ୍ୟପ୍ରଭୃତ୍ୟନଲସେନ୍ଦୁ ସହୋଦରସ୍ୟ
ଦାସ୍ୟେ ତବାସ୍ମ୍ୟହମହର୍ନିଶମେବ ଯୁକ୍ତଃ ।
ଆଗୋଲତା ନ ଗଣୟୃତ୍ୟକୃତଂ ଯଥା ଲେ-
ହାଲେ ମମ ତ୍ୱମପି ଯତ୍ତୁ ଚତଂ କ୍ଷମସ୍ୱ ।

ଇଥଂ ପ୍ରତ୍ୟଙ୍ଗ ଚୁମ୍ବାତତ୍ପରପର୍ଯ୍ୟାପ୍ତରତିଗୁମ୍ଫାରତମହାର କରଣୈଃ ସହଚୁଲଚ୍ଚୁଟୁକ୍ତିପଟିମାଚ୍ଛୋପଧାଟିଚ୍ଛେଦୈର୍ମୁହୁର୍ଭବତ୍ଗ୍ରେଭଶ୍ଲେଷାଙ୍ଗ-ଲବ୍ୟଜନବୀଜନକ୍ଲେଶାସହ୍ନାବସୀନାୟାଂ କ୍ଷଣଦାୟାଂ ମଞ୍ଜୁଳକେଳିମଞ୍ଜୁଷା ହଳସ୍ୱଦ୍ୱାର ହଳୀସ୍ତ କ୍ୱଚନ୍ ବ୍ରଜଦେବୀ ।

ରାଗ ନୃଖାସୀ । ଅଡତାଳୀ

ଯୋଷାବରରେ । ଯଥାର୍ଥରେ ଜାଣ ମୁଁ ତୋହ ରେ
ଯାମଲାଭୁଧରନିଭ ପୟୋଧର ମରଦନୟା ଶ୍ରୀକର ରେ । ପଦ ।
୧ଯାବକୁ ତୋ ପାଦ କଞ୍ଜର ୨ସୁମଦ ଗଜଗତି ମୋ ୩ଶେଖର ରେ ।
୪ଯତୀନ୍ଦ୍ର ସମାଧି ଖଣ୍ଡନା ତୁ ୫ନାଥ ମୁ ଇଙ୍କମାନଙ୍କ ୬ବର ରେ । ୧ ।
୧ଜନକ କି ତୁହି ପୂର୍ଣ୍ଣଚନ୍ଦ୍ରମୁହିଁ ମୋ ୨ମହାଶୁଭଦଶାର ରେ ।
ଯତ୍ନେ ସମ୍ପାଦିବା ୩ଚିନ୍ତାମଣି ଅବା ମୋକରେ ଦେଲୁ ୪ସୁଧାରରେ ॥
ଯୁବତୀ ୧କଦମ୍ବ ରାଜା ୨ଅବଲମ୍ବ ହୋଇଲି ଯେବେ ୩ନିକରରେ ।
ଯୁବକଙ୍କୁ ୪ସନ୍ନିଦ୍ଧ ହୋଇ ଅତି କ୍ରୁଦ୍ଧ ହେଉ ଏବେ ୫ପଞ୍ଚଶରରେ । ୩ ।
ଯମୁନା ୧ବାହିନୀ ୨ତଟରୁ ଦବନୀ ୩ଅବନୀ ବନାଇବାର ରେ ।
ଯଶ ରଖି ୪ନନ୍ଦାପଟଳରୁ ୫ବୃନ୍ଦା କରାଇଲାତ ନବାର ରେ । ୪
ଯଶୋଦା କୁମର ଗିରେ ରାଧାଶିର ନୁଅଇଁଲେ ଲଜ୍ଜାଭର ରେ ।
ଯୁଗଳ ବିଗ୍ରହ କର ଅନୁଗ୍ରହ ଅଷ୍ଟ ଦୁର୍ଗ ପୁରନ୍ଦର ରେ । ୫ ।

ଅର୍ଥ–ହେ ରମଣିମଣି ! ମୁଁ ତୋହର ସର୍ବସ୍ୱ ଅଟେ ଏହା ତୁ ଠିକରୂପେ ମନରେ ଧାରଣା କର । ମୁଁ ତୋହର ଯାଉଳ ପର୍ବତ ସଦୃଶ କୁଚଦ୍ୱୟ-କୁ ଘଷାଘଷି କରିବା ନଉକର ଅଟେ ।

୧—ହେ ୧ଉନ୍ମତ୍ତ ଗଜଗମନା ତୋହର ପାଦପଦ୍ମର ଯେ ୨ଅଳତା ସେ ମୋହର ଶିର ୩ଭୂଷା ଅଟେ । ହେ ଋଷି ଶ୍ରେଷ୍ଠର ତପସ୍ୟା ଭଙ୍ଗକାରୀ ଅର୍ଥାତ୍ ଋଷି ୪ମୋହିନୀ, ତୁ ୫ଅଷ୍ଟନାୟିକା ସ୍ୱରୂପ ଅଟୁ । ମୁଁ ଦରିଦ୍ର ୬ଶ୍ରେଷ୍ଠ ଅଟେ ଅର୍ଥାତ୍ ମୁଁ ପ୍ରୀତିରେ ସଦା ଅଭିଳାଷି ମାତ୍ର ତୋହଠାରେ ତାହା ପୂର୍ଣ୍ଣ ମାତ୍ରାରେ ଅଛି ।

୨—ହେ ବର୍ତ୍ତୁଳ ଚନ୍ଦ୍ରାନନା ! ମୋହର ଭଲ ୧ଅବସ୍ଥା ହେବାର ତୁହି କେବଳ ୧ମୂଳକାରଣ ଅଟୁ । ସ୍ନେହ ପୂର୍ବକ ସାଇତ ଥିବା

ଚହ୍ନକାଳ ଅଭିଲଷିତ ୩ରତ୍ନକୁ ମୋ ହସ୍ତରେ ଦାନ ୪ଅଞ୍ଜଳିରେ ଭରିଦେଲୁ ।

୩—ହେ ନାରୀ ୧ସମୂହର ରାଜା ମୁଁ ଯେବେ ପ୍ରକୃତରେ ତୋହର ୩ନାହାନ୍ତ ୬ଆଶ୍ରିତ ହେଲି ତେବେ ୫କନ୍ଦର୍ପ ଏବେ ବିଶେଷ ଗର୍ବାନ୍ୱିତ ହୋଇ ରତିରୂପ ସମରକୁ ମୋତେ ୪ଆହ୍ୱାନ କରୁ ମୋହର କିଛି ଆଉ ଭୟ ନାହିଁ ।

୪—ହେ ସଖି, ୫ବୃନ୍ଦାବନ ୧ଯମୁନାନଦୀ କୂଳରେ ଥିବା ୬ବନକୁ ୩ସଂସାର କରିବା କି ଗୃହ ସ୍ୱରୂପ କରିବା ମହତକୁ ରଶ୍ମି ବନ୍ଧ୍ୟା ୪ସମୂହରୁ ରକ୍ଷା କରାଇଲା । ଅର୍ଥାତ୍ ତୁମ୍ଭଙ୍କୁ ପାଇବା ନିମନ୍ତେ ମୁଁ ନିଜଗୃହକୁ ଛାଡି ସବୁବେଳେ ଯମୁନା ତଟସ୍ଥ ବନରେ ବାସ କରୁଥିଲି ମାତ୍ର ଯେବେ ବୃନ୍ଦାବନ ମୋତେ ତୁମ୍ଭଙ୍କୁ ଭେଟାଇବା ସକାଶେ ସାହାଯ୍ୟ ନ କରି ଥାନ୍ତା ତେବେ ଲଜ୍ଜାରେ ମୁଁ ଦାଣ୍ଡରେ ମୁହଁ ଟେକି ଚାଲି ପାରି ନ ଥାନ୍ତି ।

୫—ରାଧା ଶ୍ରୀକୃଷ୍ଣଙ୍କ ଉପରୋକ୍ତ ବଚନରେ ଶରମ ପାଇ ମୁଣ୍ଡ ଟେକି ପାରିଲେନାହିଁ । ରାଧାକୃଷ୍ଣ ଦୁଇ ମୂର୍ତ୍ତି ଅଠଗଡର ରାଜାଙ୍କ ପ୍ରତି ଅନୁକୂଳ ହୁଅ ।

—୪୦—

ଅନାଦୃତ୍ୟାଲୀନାଂ ପ୍ରିୟବଚନମାଦାମକଠିନଂ
ହଠାଦପ୍ରେମ୍ଣଃ ଶ୍ରଦ୍ଧାର୍ଗଳନବତ୍ତରୂଢାସି ସଖି ତେତ୍ ॥
ଇଦାନୀମପ୍ୟାମ୍ରା ବନନବନିଭୂଷାଘଂ ସୁଷମେ
ଯଥା ଭୂୟାଦଯତ୍ନାନ୍ କୁରୁ କୃତ ସପତ୍ନାସଂହସିତଂ

ଇତସ୍ତଦାକର୍ଣ୍ୟ କର୍ଣ୍ଣାଭ୍ୟର୍ଣ୍ଣଚୂମ୍ବିତଭୂର୍ଣ୍ଣକ୍ରୀଡାଲୋଚନାଦାତୋତ୍ତୀର୍ଣ୍ଣ ସ୍ୱର୍ଣ୍ଣସାବର୍ଣ୍ୟପର୍ଣ୍ଣବର୍ଣ୍ଣ ଶୀର୍ଣ୍ଣନିଧୂବନୋତ୍ସାହା ସା ପ୍ରକୀର୍ଣ୍ଣମାଲ୍ୟମୁଖ୍ୟାସ୍ୟ ସନା ସ୍ୱରୂପଂ କଣ୍ଠୋରେଣ୍ୱରଂ ପ୍ରତି ।

## ରାଗ କେଦାର ଆଡତାଳ ।

୧ଉଆଳସାରେ । ରସି ପୁଣି ଏ କି ଲୋକ ହସାରେ । ପଦ ।

୧ଉଲ୍ଲିମା ୨ଚୁମ୍ବିଲା ୩ଇନ୍ଦୁ ଅଶାରେ । ୪ସରୋଜେ ୫ପ୍ରଫୁଲ୍ଲ ହେଲେ ୬ଳାସାରେ । ୧ । ୧ଉଛନାଥ ୨ସମର ପ୍ରଶଂସାରେ । ରମଣୀ କେ ନ ରସନ୍ତି ସଂସାରେ । ୨ । ରସିକେ ରସନ୍ତି ସିନା ହର୍ଷାରେ । ରଜନୀ ଶେଷରେ ଏକ ଦଶାରେ । ୩ । ରହୁ ନାହିଁ ଯଶ ଆଡ଼େ ରୁଷାରେ । ଉଆଭୂତରୁ ଲତାକୁ ଖସାରେ । ୪ । ରମଣୀୟ ହେମନ୍ତ ସୁଦୃଶାରେ । ରଖିଲୁ କେତେ ହାବଭାବ ମସାରେ । ୫ । ଗୃଢ଼ା ଅଷ୍ଟ ଦୁର୍ଗରେ ଏ ଭୃଷାରେ । ରହେ ଏବେ ବଳେ ହେଉ ସୁଖାରେ । ୬ ।

ଅର୍ଥ—ରେ ୧ରସମୁଗ୍ଧା, ଭୁତ ରସିକଜନ ହୋଇ କ୍ରୀଡାକଲୁ ପୁଣି ତୋର ଏ କି ହଠହଠା କଥା ଅଛି ।

୧—୩ପୂର୍ବଦିଗ ୧ଲାଲବର୍ଣ୍ଣକୁ ୨ଧାରଣ କଲାଣି ୪ପଦ୍ମମାନେ ୬ଚଂପା- ଖଷିରେ ୫ଫୁଟିଲେଣି ।

୨—ପୃଥିବୀ ମଧ୍ୟରେ କୌଣସି ସ୍ତ୍ରୀ ୧କନ୍ଦର୍ପ ୨ଯୁଦ୍ଧରେ କପ୍ରୃ ହୋଇ ଧନ୍ୟବାଦକୁ ପାଇବାକୁ ମନ ନ କଲାନ୍ତି କି ? ଅର୍ଥାତ୍ ସଂସାର ମଧ୍ୟରେ ଯେତେ ସ୍ତ୍ରୀ ଅଛନ୍ତି ସମସ୍ତେ କନ୍ଦର୍ପ କ୍ରୀଡାକୁ ଭଲ ବାସନ୍ତି

୩—ଗ୍ରାହକ ବା ଅନୁରାଗୀମାନେ ରାତ୍ରରେ କେବଳ ରତିକ୍ରୀଡାରେ ମାତନ୍ତି ସିନା । ମାତ୍ର ରାତ୍ର ପାହିଗଲେ ଏ କି ଅବସ୍ଥା ?

୪—ତୋହର ପ୍ରଶଂସା ଗୋହଲାଇ ହୋଇ ରୁଷିବା ଭଙ୍ଗୀରେତ ରହୁ ନାହିଁ ମାତ୍ର ପୃଥ୍ୱୀରୁ ଗଛରୁ ଲଟିକୁ ଟାଣି ପକାଅ । ଅର୍ଥାତ୍ ତୋହର ରୁଷିବା ଭଙ୍ଗୀ ବିଶେଷ ଦେଖାଉ ଅଛୁ ମାତ୍ର ଯାହା ହେଉ ଲୋକଙ୍କୁ ଠିକାଏ ଛାଡଦିଅ । ଉଆରୁତ ଅର୍ଥ ( ରାଧା ) ଓ ଲତା [ ଲଜ୍ଜା ]

୫—ରେ ସୁ ଲୋଚନା; ସୁନ୍ଦର ସୁବର୍ଣ୍ଣକୁ କେଉଁଠେ ନବଢଳରେ ଇନ୍ଦ୍ର–ନୀଳମଣି ସଙ୍ଗରେ ରଖିଲୁ ଯେ ବଟଠ ଭ ସେ ସୁବର୍ଣ୍ଣ ତହିଁ ବାହାର ପାରୁନାହିଁ ।

୬—ତୁମ୍ଭେ ନିର୍ବିଘ୍ନରେ ଓ ଅନନ୍ଦରେ ବଳେ କର ଏହା ଅଠଗଡର ଗ୍ରଜା କହେ ।



ଲମ୍ବମମ୍ବରମାରକ୍ତଂ ପ୍ରାଣ୍ଟ ପ୍ରାଚୀକଣ୍ଠୋଲ୍ଲଣ୍ଠୌ ।
ବାଲାହୃଦୟ୍ପଙ୍କେଷୋ ୯ୂଞ୍ଛ ମହ୍ଲକ୍ଷ୍ମୁ ବାଞ୍ଛଲଂ ।

ଅମନ୍ଦାନନ୍ଦଶୀସୂଷନସ୍ୟନ୍ଦସନ୍ଦୋହଭୂନ୍ଦିଲସ୍ୟନ୍ଦନପଦଦର୍ଣ୍ଣିତନନ୍ଦନଦେବୀ ନିଶାଚରମଦଶାସ୍ମାରକବନେଚରଚରଣାନ୍ୟୁଧ୍ୟଧ୍ଵନିଭର୍ଯମୂନାବଃପୂରବାକୀର୍ଣ୍ଣରବାନ୍ଦବୃନ୍ଦବୃନ୍ଦମକାଇନ୍ଦପାନପ୍ରମୂଦ-ତାଳପାଲାପ୍ରାଣୀତଷ୍ଟଙ୍କାରୈର୍ନନ୍ଦମନ୍ଦିରଗୋପୂରିବ ଲମ୍ବନ୍ଦି ବଲୁଇମ୍ଭସ୍ତବପାଃବୈବାହ୍ନମାବଗାହାଗତଗୋପୀଜନଚରଣାଭରଣରଣନ୍ନିରଣୈଃପୂରିରଭ୍ୟମାଣପ୍ରଭାତକଲ–ଶ୍ରମାରବାଢ–ମ୍ବରୈଃ ସନ୍ଧୃତୋଽପ୍ୟମ୍ବରତଲେ ଶନୈର୍ନିଷ୍କ୍ରାନ୍ତ୍ତିଷ୍ଟାନ୍ତାଯୁଂ କାନ୍ତାଯୁଂ ତାଂ ପ୍ରତି ସଖ୍ୟଃ ।

ରାଗ ଅବକାଶ । କିପୁଟ୍ଟା, ପଦ୍ମପଟ୍ଟ, ଅଡତାଳୀ ।

୧ଲାଲାନିଧିହେ, ଲଜ୍ଜେ ମୁଁ ଗଲଟି ସତ୍ତି । ଲୁଗ୍‌ଇଛ କାହିଁ ଶ୍ୟାମ ହେ ଦଅ ମୋ ୨ଲଗିଶାଢ଼ୀ । ପଦ ।

ଲଭ ତୁମ୍ଭଙ୍କୁ ପ୍ରାଣନାଥ କର । ଲୋକ ହସାରେ ଯେବେ ଯିବ ସର । ୧ଲସିବ ଯେବେ ପାଇ ଲନ୍ଦାବାର । ଲାଗିଲ ଆପଣଙ୍କୁ ଦେହ ଅର ॥ ଲକ୍ଷ ଲକ୍ଷ ଗ୍ରଣ ଅଛୁଟି ମୋର । ଲଲାମ ଅଦ ଭୂଷା ଦଳକର । ଲଭ–ଥିବ ଭ୍ରୂମଧ୍ଯ ତିଳକ । ଲେଖିଦଅ ବେଗେ ନ ଦେଖୁଁ ଲୋକ । ୨ । ଲୋଭୀ ଶ୍ରୀ ଭୁଜବନ୍ଧା ଶିଥିଲାଅ । ଲତା ଗହନେ ୨ ପଳାଅ । ଲାଗିଛୁ ଲାଷା ମୁକୁଟ ଶିଖଣ୍ଡ । ଲଜ କଥା ଲୋକେ ଦେଖିଲେ ଦାଣ୍ଡ । ୩ ।

ଲଗାଇଛ ଲଟ କେଉଁ ରସରେ । ଲୁଟିବ ସିନା କାଲି ପ୍ରଭାତରେ । ଲଙ୍ଘି ଆସିଛେ ଥିବ କୃପାସିନ୍ଧୁ । ଲଜ୍ଜା ଅଟି କେତେ ହେଲୁ ହେ ବନ୍ଧୁ ॥ ଲଳିତା ନୋହେଟି ଯେ ଡାକୁଅଛୁ । ଲକ୍ଷେ ଦୁଷ୍ଟାରେ ମୁଁ ରଖିଛୁ କାଛୁ ଲଘୁ କରିବ ସେ ଦେଖିଲା କ୍ଷଣେ । ଲେଖାନ୍ତି ଅଷ୍ଟ ଦୁଟିର ଭଣେ । ୫ ।

ଅର୍ଥ—ହେ ୧ନଟନାଗର, ମୁଁ ଲଜ୍ଜାରେ ସଡଗଲିଟି ? ହେ କୃଷ୍ଣ ମୋ ୨ପିନ୍ଧିବା ଶାଢ଼ୀକୁ କେଉଁଠାରେ ଲୁଚାଇ ରଖିଅଛ ମୋତେ ଦିଅ ?

୧—ତୁମ୍ଭଙ୍କୁ ଜୀବନ ସର୍ବସ୍ୱ ସମାନ ପାଇକରି ଯେବେ ଲୋକାପବାଦ କୁ ହଟ ହଟା ହୋଇ ସହିଯିବ ଓ ଯେବେ ପରଙ୍କ ଗଞ୍ଜଣାରେ ମନ୍ତ୍ରି ତଳକୁ କଲି ତେବେ ତୁମ୍ଭଙ୍କୁ ଅଉ ମୋର କଣ ଲାଗିଲା ଅର୍ଥାତ୍ ମୋତେ ଆଉ କେଉଁ ଆପଦରୁ ରକ୍ଷାକରିବ ?

୨—ମନୋହର ତୁମ୍ଭଙ୍କୁ ଅସଂଖ୍ୟ ୨ ଗୁଣ ଅଛିଟି । ତୁମ୍ଭର ହିରଭୂଷା ପ୍ରଭୃତି ବେଶକୁ ଶୀଘ୍ର ସଜାଡ଼ି ଦିଅ ॥ ବୃକ୍ଷଲତା ମଧ୍ୟରେ ଥିବାଟିତା ଫୋଟି ହୋଇ ଯାଇଥିବଟି ॥ କେହି ନ ଦେଖୁଣୁ ତାହା ସବୁ ଟିତା କାଢ଼ି ପକାଅ ।

୩—ଅହେ ରଙ୍ଗା, ତୁମ୍ଭର ବାହୁରେ ମୋତେ ଯାହା ଭଡ଼ି ଛନ୍ଦିକରି ଧରିଅଛ, ଟିକାଏ ହୁଗୁଲାଇ ଦିଅ, ବନ ଭିତରେ ୨ ଖସି ପଳାଅ ମୟୂରଚନ୍ଦ୍ରିକା ଚୂଡ଼ାରେ ଅଲଡା ଲାଗିଅଛି । ଦାଣ୍ଡରେ ସମସ୍ତେ ଦେଖି ପରିହାସକଲେ ଲଜ୍ଜାରେ ସରିଯିବଟି ?

୪—ତୁମ୍ଭେ ଯେଉଁ ଲୁଗା ନେବା ସକାଶେ ଜଞ୍ଜାଳ ଲଗାଇଛ ତାହାକୁ କାଲି ସକାଳେ ସିନା ହରିବ । ମାତ୍ର ହେ ଜୀବଧନ ! ମୁଁ କୃପା ସମୁଦ୍ରକୁ ପର ହୋଇ କି ତୁମ୍ଭ କଥା ନ ରଖି ତୁମ୍ଭ ଭରସାରେ ଥିବି ବୋଲି ମନେ କରିଥିଲି ମାତ୍ର ଆପଣ ଜଣେ ପ୍ରଧାନ ଲଞ୍ଚଖିଆ ଅଟ । ଅର୍ଥାତ୍ ଲୁଗା ନ ନେଲେ ମୋ ପ୍ରତି ଦୟା ପ୍ରକାଶ କରିବ ନାହିଁ ପରା ?

*— ଯେ ମୋତେ ଡାକୁଅଛି ସେ ଲଳିତା ନୁହେ କି କୋମଳା ନୁହେ ଅସଂଖ୍ୟ ମୁଗ୍ଧ ମାନଙ୍କ ମଧ୍ୟରେ ତାହାକୁ ଠିକାକର ରଖି-ଅଛି ସେ ମୋତେ ଦେଖି ଲକ୍ଷଣି ଦକ୍ଷିତା କଉଦେବ ଅଠଗଡର ଗୃଜା କହଇ ।

ଲେଖାଧିପ — ଶ୍ରୀଙ୍କଶ୍ରେଷ୍ଠ

—୦—

ଯା ଭୁଂ ଶିଖିଷାଙ୍ଗଲତେଭ ସନ୍ଦେହା ନାଲୀକନାଲଙ୍କ ନମପଥଗାଢ଼ଂ ॥ ଅମାଲରଶ୍ନାର୍ଗଲଯୁଗ୍ନାଭୁନା ସେବ ଦ୍ୱିମାସୀଃ କଥାମଦ୍ୟକଷ୍ଟଂ । ଶ୍ରାନ୍ତଃ ପ୍ରଣୟହାସପରହାସେବିଙ୍ଗ ଗୃହିତତେଦ୍ୟକ ମାଲ୍ଲିକାମାଲ୍ଲିକାସ୍ଥ ମଙ୍ଗଙ୍ଗ ଧୂଲିହ୍ଲାପୂଲୀଲାବିମର୍ଦ୍ଦ ନନ୍ଦୁଲାଙ୍ଗବା ନାଙ୍ଗୀକୃତ୍ୟାଙ୍ଗରଗାଦାହର୍ସ୍ଥାର ଧାଳସଞ୍ଚାଲସମୀରେଣ କଦମ୍ବକଦମ୍ବସମ୍ପାଦେନ ପଥ । ତାଭିଃ ସହଚରୀ ଭିରବଗାହ୍ୟ ଯମୁନାଂ ପ୍ରକ୍ଷ୍ଟାଲ୍ୟ ସୁଧାଚ୍ଛ୍ୟାନକଷ୍ନାଦାଗୀତଃ ସନ୍ଦୀ ପନୀମୁନ୍ନା ନନ୍ଦ ସ୍ଥାନନ୍ଦଂ ଶ୍ରାନ୍ତସ୍ତଂ ପ୍ରତି ସନ୍ନିତଂ ।

ରାଗ ସାଙ୍କେର । ଅଠତାଳୀ ।

ଢଚେଷ ୪ବେଣ ମଞ୍ଜୁଳାରେ ବାଲା ! ୨ବିବିଧଗ୍ରନ୍ଥିତଶୀଳା ।
ବଭ୍ରବଷି ଅର୍ଦ୍ଧେ ଏକାକୀ ହୋଇ ତୁ ରହୁଅଛୁ ଫୁଲତୋଳା ।
୧ବିଳାସକୁଞ୍ଜଶାଳାରେ । ବଲ୍ଲୀ ନିଳୟ ୩ଦ୍ୱାର ଖୋଲା । ୧ ।
ବାଲକାଳୁଁ ଦାସୀପଣ କରେ ବାଳ ! ବନ୍ଧୁ ଥିଲୁଁ ଅନୁସର ।
ବାଲ୍ୟଷଣ ବନଚାରର ଉତ୍ତର ବେଳେ ତୁ ଦେଲୁ ପାସୋର ।
ବଗ୍ରହତ ଗୋର ରେ ! ଅଣ୍ଡେ କାହିଁକି ପ୍ରୀତି ଆଚର । ୨ ।
ବଲ୍ଲୀ ଅନାଇ ଦୂରକୁ ରେ ବାଲା ଖାସରେତ ଭୟ କରୁ ।
ବୃକ୍ଷେ ଅଜା ଶୁଣି ଆସିଲୁଣି ପୁଣି ପ୍ରତାରିତ ଅସୁ ଧରୁ ।
ବଜନେ ସଖିରୁ ରେ । ବଡ ବିଷମ ଏ ଯା ନ ଡ଼ରୁ । ୩ ।
୧ବ୍ୟସ୍ତ ହୋଇ ୨ଚିବମାଛୁ ରେ ବାଳା ! ୩ବ୍ରଣ ଗଣତ ଦଶୁଛି ।

ବିମ୍ବାଧରରୁ ନବ ପଲ୍ଲବମାନଙ୍କୁ ବାଣ୍ଟି ଦେଲୁ ତାଙ୍କ କଣ୍ଠ ।
୪ବିଶ୍ଳଥ ହୋଇଛିରେ । ବାସ ପିନ୍ଧ ଥାଉ ପଛ ୫କାଛ । ୪ ।
ବିନୟ ସୁନୟ ବଢରେ ବାଳା ! ବିମୋହନ କଳାବତି ।
୧ବିରୂପାକ୍ଷଦେବ ୨ବିପକ୍ଷଙ୍କୁ ଜିଣି ଯଶେ ମଣ୍ଡିଲୁ କ୍ଷିତି ।
୩ବିଲ୍ଲବ ଯୁବତିରେ । ବନେ ଅଣ୍ଟ ଦୁର୍ଗ ଧରିପଡି । ୫ ।

ଅର୍ଥ—ରେ ନାନା ପ୍ରକାର ମନୋହର ୪ବେଶଭୂଷାନ୍ୱିତା, ତୁ ନାନାବିଧ କଥା କହିବାରେ ୨ନିପୁଣା ଅଟୁ, ରେ ୧କ୍ରୀଡାପଣ୍ଡିତା କୁଞ୍ଜମନ୍ଦିରରେ କ୍ରୀଡାକରିବାକୁ ୩ରଙ୍ଗପର ହୋଇ କଣିଥରେ ଏକୁଟିଆରେ ଫୁଲ ତୋଳୁଅଛୁ ।

୨—ରେ ସଖି, ଆମ୍ଭେ ପିଲାବେଳରୁ ତୋହର ଯୋଗଲ ପଛ ଉମେଦବାର ହୋଇ କାଳ କଟାଉଥିଲୁ ମାତ୍ର ଅସାଧାରଣ କୁଞ୍ଜବନ କେଳି ବେଳେ ଆମ୍ଭଙ୍କୁ ମନରୁ ଅନ୍ତର କରିଦେଲୁ ।। ରେ ସୁନ୍ଦରି, ତୁ ହୃଦପଦ୍ମରେ ଭାବିଲୁ ? ଆଉ ପୃଥିବୀରେ କାହାସଙ୍ଗରେ କାହିଁକି ସଙ୍ଗିନୀହେବା ?

୩—ରେ ସଖି, ତୁ ଘରେ ଥାଇ ଦୂରରୁ ଲତା କୁଞ୍ଜକୁ ଦେଖି ଧନରେ ସ୍ପୃହା କରୁ ମାତ୍ର ଆଜ ଗୋପପୁରରେ ଶୁଣି ଆସିଲି ତୁ ପୁଣି ରୋଜ ରାତିରେ ଘରୁ ବାହାରିଆସି ବଣରେ ବୁଲୁଅଛୁ, ତୋତେ ଯାହା ଡର ନ ଲାଗୁଛି, ଏହା ବିଶେଷ ଆଶ୍ଚର୍ଯ୍ୟର ବିଷୟ ଅଟେ ।

୪—ରେ ସଖି, ବ୍ୟସ୍ତ ହୋଇ ୧ଏଣେତେଣେ ୨ବସିଥିବାମାଛିମାନଙ୍କର ଛବି ସଦୃଶ ତୋ ଓଷ୍ଠରେ ୩ଦନ୍ତକ୍ଷତ ଚିହ୍ନ ଦିଶୁଅଛି । ତୁ ତୋହର କଇଞ୍ଚକାକୁଣ୍ଡ ସଦୃଶ ଓଷ୍ଠରୁ ନୂତନ ପତ୍ର ମାନ କିଛି ବାଣ୍ଟି ଦେଲୁ କି ? ଉପରି ୫କଛମାର ଲୁଗାକୁ ଭିଡି ପିନ୍ଧିଥାଉ ମାତ୍ର ତାହା ହୁଗୁଲି ଯାଇ ଅଛି କାହିଁକି !

୫—ରେ ସଖି, ତୁ ନମ୍ରତା ଦେଖାଇବାସମ୍ବନ୍ଧେ ବିଶେଷ ମନ

ଯୋଗୀ ହେଉ ଓ ତୁ ଗୋଟିଏ ମନମୁଗ୍ଧକାରଣୀ ରସିକା ଅଟୁ ତୁ ୩ଗଉଡୁଣୀ ଠାଏ ହୋଇ ୧ମହାଦେବଙ୍କ ଶତ୍ରୁ ୨କନ୍ଦର୍ପକୁ ରତି ସମରରେ ହରାଇ ମହୀରେ କୀର୍ତ୍ତି ଥୋଇଲୁ ଏହା ଅସ୍ମାଭୁ· ର୍ଗର ରାଜା ସ୍ତୁତି କରଇ ।

ନବଶୈଶବଯୌକୁମାର୍ଯ୍ୟଧୂର୍ଯ୍ୟଂ ଲଲୀ ଲୋଦ୍ଭୂତଦୁର୍ବାରଚଲସ୍ୟ ।
ତବ ତସ୍ୟ ଢାଲାଢ୍ୟ ବାଲିକାସ୍ୟାସ୍ତନତାଲ ଦ୍ୱୟଦାରଣଂ ନଟନ୍ତଂ
ଚିରେଣଲବ୍ଧାଧୁବ୍ଧାମନୋରଥଫଲତଯ୍ୟା ଗର୍ବ୍ବିତୋଽପିଷୀଶବିଦିତପବାଶବଂଶୀ
ରମଣୀସ୍ୱାଦ୍ୟବୋଦ୍ଧବ୍ୟଂ ନନ୍ଦଯଶୋଦୟୋଃପୁରତସ୍ତବାଚରତିମିତ୍ରୁଃ ।
କୁବେତ ମଧୁମଙ୍ଗଲେ ସଭ୍ରଣସୂମୀଷତ୍ତ୍ୱାସହ୍ନିତସ୍ତଂ ପ୍ରତି କୃଷ୍ଣଃ ।

—○—

ଶ୍ୟାମ ଶିଖଣ୍ଡ ଚୂଳ । ଶ୍ରମକ ଅଙ୍କପାଙ୍କେ ହେଲା ସୁଫଳ । ପଦ ।
୧ଷଂଶୀ ନିନ୍ଦ୍ରାବନା ଗଲାକ ସର । ଶମ୍ବର ୨ଯର ଘୂର ଦେଲ କଜୁରୀ । ୧ । ଶ୍ରୀଅଙ୍ଗ ଦେଶ ଦଶେ ଏପରି ଆଜ । ଶରଦଚନ୍ଦ୍ରମୁଖେ ନାହିଁ କି ଲାଜ । ୨ । ଶିଶୁ ହେଲେ ହେଁ ତୁମ୍ଭେ କେଶରୀ ସର । ଶଶୀ କଶୋଶ୍ରୀଟିକି ଦେଲ ଯେ ସାର । ୩ । ଶିର ସୁନ୍ଦର ଦାଶେ ଯାବକ ବୋଲେ । ଷଡଣ ବୋଲି ପଡିଲ ଢ ପା ତଳେ । ୪ । ଶିଷ୍ଷ ମାଲ ଦଳି ଦେଲ କୁଠାରେ । ଶଙ୍କା ନକଲ ସଖୀ ମାନଙ୍କ ଠାରେ । ୫ । ଶରନ୍ନ ପ୍ରଦ ଆଜ ସରିକ ହେଲା । ଶ୍ରନ ୧ସ୍ୱସା ତଠେ ୨ଅଠବା ବୁଲା ॥ ଶପଥ ଶତ ଶତ କହୁଛି ହଠ । ଶ୍ରୀବାଲୁଙ୍କେଶ ଦେବ ରଚିଲେ ଗୀତ । ୬ ।

———

ଅର୍ଥ ।

ହେ କେକଚୂଳ ଚୂଳଅ ଶ୍ରୀକୃଷ୍ଣ, ତୁମ୍ଭର ପରିଶ୍ରମ ଅଜ ସୁଦା ସାର୍ଥ ହେଲା ନାହିଁ କି ?

୧ — ୧ଗର୍ବି ଯାକ ନିନ୍ଦ ନହୋଇ କ୍ଷେପ ହୋଇ ଗଲା କି ? ୧କନ୍ଦ-
ର୍ପ ମନ୍ଦିରକୁ ଲୁଟ୍‌ପାଟ କରି ପକାଇଲକି ?

୨ — ଆଜି ତୁମ୍ଭ ଦେହ ଏପରି ଶୁଖିଲା ଦିଶୁଅଛି କାହିଁକି ? ତୁମ୍ଭ
ନିଷ୍କଳଙ୍କ ଚନ୍ଦ୍ରମୁହଁକୁ ଲାଜ ନାହିଁ କି ?

୩ — ତୁମ୍ଭେ ଅତକ୍ଷୟ ପିଲାହେଲେ ସୁଦ୍ଧା ଯେହି ନିଦ୍ଦୃଶ ଅଠ ଅମ୍ଭ
ଠେକୁଆ ସରି ରାଧାଙ୍କୁ ନିକାଶ କରିଦେଲ ଯେ ?

୪ — ତୁମ୍ଭ ମସ୍ତକ ଅଳଙ୍କାରଙ୍ଗରେ ଭଲ ସୁନ୍ଦର ଦେଖାଯାଉଅଛି
ଇଷ୍ଟା କରି ବୋଲି ଗୋଡତଳେ ପଡିଲ କି ?

୫ — ଶିରୀଷ ଫୁଲ ହାଇ ସଦୃଶ କୋମଳା ରାଧାଙ୍କୁ ଚକଟିଦେଲ ଯେ
ତୁମ୍ଭେ ତୁମ୍ଭ ସାଙ୍ଗିମାନଙ୍କୁ ଟିକିଏ ଭୟ କଲ ନାହିଁ ?

୬ — ହେ ଶ୍ରୀକୃଷ୍ଣ, ତୁମ୍ଭର ଯମୁନା ୧ନଦୀକୂଳ ୨ବନରେ ବୁଲିଲା ଆଜ
ପର୍ଯ୍ୟନ୍ତ କି ଏଣିକି ଲଜ୍ଜା ଦାୟକହେଲା ଅର୍ଥାତ୍ ଏଣିକି ଯମୁନା କୂଳେ
ବୁଲିବାକୁ ଲାଜ ମାଡିବ ।

୭ — ମୋର ଅସଂଖ୍ୟ ବାର ଋଣ ଅଛି । ସତକଥା କହ ? ଅର୍ଥାତ୍
ରାଧାଙ୍କ ସଙ୍ଗରେ ତୁମ୍ଭର ମିଳନ ହୋଇଅଛି କି ନାହିଁ ସତକଥା କହ
ତୁମ୍ଭଙ୍କୁ ମୋର ବାରମ୍ବାର ଋଣ ଅଛି ? ଶ୍ରୀ ବାଲୁଙ୍କେଶ ଦେବ ରାଜା
ଗୀତ ଉଆର କଲେ ।

---

ଅନ୍ୟୋନ୍ୟାଶ୍ଲେଷହର୍ଷବ୍ୟତିକରବିମଲସ୍ଵାନ୍ତସନ୍ତୋଷବନ୍ତା-
ବନ୍ୟୋନ୍ୟାକ୍ଷୋଣିଲକ୍ଷ୍ମୀଷଣଗଳିତ ସମସ୍ତାନ୍ତରାୟୌ ସଖାୟୌ
ସଶ୍ରଦ୍ଧାବଦ୍ଧପଦ୍ଧତ୍ୟୁପନତସଖିଭିଃ ସାର୍ଦ୍ଧମାନନ୍ଦବଂଶୀ
ଶୃଙ୍ଗାଧ୍ମାନାଦ୍ଧ୍ୟତାରଂ ତଦପଦଘନଭୂବୋଜଗ୍ନୁସ୍ତୀର୍ଣ୍ଣରନ୍ଧ୍ରୈଃ ।

ତତସ୍ତସ୍ୟାସ୍ତୀରେ ପ୍ୟନ୍ୟଦାମାଲଶତପରସଗୋହନେନାଭିର୍ବିଲ୍ଲବପଲ୍ଲବା
ଟବାଭିଶ୍ରାଦବଲ୍ଲୀକ୍ୟ ସବନବାଲକ ବୃନ୍ଦଂ ସମୁଦ୍ଦଣ୍ଡତାଣ୍ଡବଧାଣ୍ଡିତ୍ୟ

ଶୋଭିପିଚିଣ୍ଡ୍ରେଲଚରଣାମ୍ଭୋଜଂ କଣ୍ଠଦବଶିଷ୍ଟଦୈଶବଂ କେଶବଂ ମିଥଃ କଥାସ୍ତେନଚରେ ।

ରାଗ ମୁଖାରୀ । ତାଳ ଏକପୁଟ ।

ସପଥଟି ମୋର ରେ । ଯହ ଏହ ଥରରେ । ସାର ହାର ମିଣ୍ଟାରମଣୀବର ପର ଧର ବକ୍ଷ ସ୍ଥଳେ ହାରନ୍ତର ନ ଫିଙ୍ଗି ପୁଣି ହଟି ସୁନ୍ଦର ନୁହଇଟି

ବର୍ତ୍ତ୍ରର ଭରସା ଅବଢ଼ା ପରନିତ । ପଦ ।

ଶୁଣିଲେ ଅଙ୍କକେ ବ୍ରଜେ । ପରଯିବ ସିନା ଲଜେ ।
ସାହା ତୁ ନୋହିଲେ କିଛୁ । ସଂସାରେ ମୁଁ ନାକ ଅଛୁ । ୧ ।
ସାଧୁଜନ ୧ଲୁଷିକୂପେ । ଯିନା ଭଲ ମନ୍ଦ ଛପେ ।
ସଂହର କ୍ରୋଧ ଉଦୟ । ସଦନେ ତୁ ସୁହୃଦୟ । ୨ ।
ସାକ୍ଷାତ ଦେଖିଲୁ ପର । ସାକ୍ଷି ଦେବାକୁ ବାହାର ।
ସାଧିବାର ଅବସ୍ଥର । ୧ସପହି ମୁଁ ନୁହେ ଚୋର । ୩ ।
ସାନ୍ଦୀପନି ସୁତ ଯତି । ସେ କି ଯାଣେ ବୋଲି ପ୍ରୀତି ।
ସରସେ ପିଟିବେ ଢକା । ସଖାଙ୍କରୁ ଏତେ ଏକା । ୪
୧ସମାଂସ ସିନା ୨ଅଯୁତେ । ସମର୍ପି ଦେବ ମୁଁ ତୋତେ ।
ସମ୍ଭାଳ ମୋର ୩ଆକର । ସର୍ବସ୍ୱ ପରା ତୁ ମୋର । ୫ ।
ସବୁ ଅନ୍ୟାୟ ଚରିତ । ଶିକ୍ଷାକୁ ଗୁରୁ ତୁ ହିତ ।
ସମୟେ କାହୁଁ ଚେତିକି । ସଖା ଲକ୍ଷଣ ଏତିକି । ୬ ।
ଶୁଣି କିଶୋର ବଚନ । ସଖା କଲା ଆଲିଙ୍ଗନ ।
ସୁଦାମା ଅସ୍ଥ ଦୁର୍ଗର । ସନ୍ତୋଷେ ଯୋଡିଲେ କର । ୭ ।

ଅର୍ଥ — ଗୋ ଲଳିତେ ମୋ ପ୍ରାଣଟି ! ଏହି ବାର ମାତ୍ର ସହିଯାଅ । ମୁଁ ତୁମ୍ଭେ ମନତେ ଉତ୍କୃଷ୍ଟ କଣ୍ଠହାର ଲଗାଇଥିବା ଶ୍ରେଷ୍ଠ ନାୟିକା ସଦୃଶ ହୃଦୟରେ ସଦ ସ୍ଥାନ ଦାନକର ପୁଣି ଲୁଭୁଲୁଣି ହୋଇ ମୋତେ ଅନ୍ତର ନ କର ଅର୍ଥାତ୍ ଯେପରି ସ୍ତ୍ରୀମାନେ ବହୁମୂଲ୍ୟ ହାରକୁ ବକ୍ଷସ୍ଥଳରେ

ଆଦର ସହିତ ଗ୍ରହଣ କରିଥାନ୍ତି, ତୁମ୍ଭେ ସେହିପରି ମୋତେ ହୃଦ-ପଦ୍ମରେ ରଖି ମୋ ପ୍ରତି ଦୟା ପ୍ରକାଶ କରିଥିଲ ବର୍ତ୍ତମାନ ନିରାଶ ନ କରି ଯଥା ଯୋଗ୍ୟ ଆଶାକୁ ଅଗ୍ରସର କରଅ ନୋହିଲେ ଏହି ଅନ୍ତର କରିବା କଥାଟା ଲୋକେ ଶୁଣିଲେ ନିନ୍ଦା କରିବେଟି ।

୧—ଆଉ କୌଣସି ଲୋକ ଗୋପପୁରରେ ଅମ୍ଭମାନଙ୍କର ବନବିହାର କଥା ଶୁଣିପାରିଲେ ଅମ୍ଭେ ଲାଜରେ ମରି ଯିବୁଟି ? ତୁ ମୋପ୍ରତି ଟିକିଏ ସହାନୁଭୂତି ପ୍ରକାଶ ନ କଲେ ମୁଁ କିଣ ଆଉ ମହୀମଣ୍ଡଳରେ ରହିବି ?

୨—ମହତ ଲୋକଙ୍କ ୧ପେଟ ଭିତରେ ସିନା ଭଲ ମନ୍ଦ କଥା ବୁଡି ରହେ । ଅର୍ଥାତ୍ ଚୋରିକରି ଭଲ ଲୋକଙ୍କ ହାବୁଡରେ ପଡିଲେ ସେମାନେ ସେ କଥାକୁ କାହାରି ଆଗରେ ପ୍ରକାଶ କରନ୍ତି ନାହିଁ । ସେହିପରି ତୁ ଅଟୁ । ତୋହର ଗୋପାନ୍ଧତସ୍ୱଭାବକୁ ଅନ୍ତ୍ରାକର । ତୁ ସ୍ୱଭାବରେ ଗୋଟିଏ ଉତ୍ତମ ମନା ଅଟୁ କି ସରସମନା ଅଟୁ ।

୩—ତୁ ଆଖିରେ ଦେଖିବା ସମ ସାକ୍ଷୀ ଗୁଞ୍ଜୁରିବାକୁ ବାହାରିଅଛୁ ମାତ୍ର ମୋହର ଅହିତ କରିବାର ତୋର ଉଚିତ ବିବେଚନା ନୁହଇ । ମୁଁ ତ ତୋହର ୧ଶତ୍ରୁ ନୁହଇ ।

୪—ସାନ୍ଦୀପନିସୁତ ମଧୁମଙ୍ଗଳ ଜଣେ ଯତି, ସେ ପ୍ରୀତିରୀତି କି ଜାଣେ ? ତୋ କଥା ସେ ଶୁଣିଲେ ଆନନ୍ଦରେ ନାଗରା ବଜାଇ ପ୍ରକାଶ କରିଦେବ । ସେତେବେଳେ ତୁ ମୋ ପ୍ରୀତି କରିବାର ପ୍ରମାଣ ଦେବୁଟିକି ?

ସାନ୍ଦୀପନୀ ସୁତଯତି—ମଧୁମଙ୍ଗଳ ।

୫—ମୁଁ ତୋତେ ୨ଅସଂଖ୍ୟ ୧ଦୁହାଁଲଗାଇ ବକସିସ ଦେବି । ତୁ ମୋହର କାଳଙ୍କ କଥାକୁ ୩ଦୋହାଇ ସମ୍ଭାଳି ନଥ ତୁ ପରି ମୋର ସବୁ ବିଷୟରେ ଭରସା ଅଟୁ ।

ଶ୍ରୀ ତୁ ସମସ୍ତ ଖରାପ ବିଷୟ ଶିଖାଇବା ଯେ ବିଧାନ ସ୍ୱରୂପେ ଅଛୁ । ମାଏ ବେଳରେ ତଣ୍ଟି କାଟିବାଟା ତୋହର ଏହା ସଙ୍ଗିନୀ ଢ଼ଙ୍ଗ କି ? ଭା ସର୍ବଚରୀ ଶ୍ରୀକୃଷ୍ଣଙ୍କ ବଚନ ଶୁଣିକରି କୁଣ୍ଢାଇପକାଇଲା । ଆଠଗଡ଼ର ଇନ୍ଦ୍ର କି ରାଜା ଆନନ୍ଦରେ ହାତଯୋଡ଼ି କହଇ ।



ସ୍ଫୁରତଃ ପରତୋଽପି ଡର୍ଣ୍ଣିକାଦଧ୍ୱତ କ୍ରୀଡନମାଲ ଯସ୍ୟ ସଃ ।
ଅଳଶୀଳୁସମଚ୍ଛଦଃ ଶିଖୁର୍ବ୍ବିଦ କୋଽପ୍ୟଂ ଜନକେଶରଞ୍ଜନଃ ॥

ଇତି କୌତୁହଳାଙ୍କିତ୍ଫା ଲୋଲଲୋଚନାନାମାଭୀରାମ୍ଭୋରୁହାକ୍ଷୀଣ ମତିନେଧ୍ୟାନ୍ୟ ସମ୍ଭାଷଣ ସମାପ୍ତାବେବ ନେଦୀୟସୈକତାଙ୍ଗଲଙ୍ଗିତଚରଣ ସରସିଜେ ନଟବ୍ରଜେ ବିଧ୍ୱସ୍ତଚତୁଷ୍କୋଟିକଖ୍ୟାନମପ୍ୟଂମଦନମୋହନ ଇତି ପ୍ରେମାମହିମାଡମ୍ବରଃ ସମାବିରାସୀତ୍ ।

ରାଗ ମୋହନା । ଏକତାଳୀ

୧ଷଟପଦନୀଲକେଶି ଅଗେ ଗୃହ୍ନ ଗୃହ୍ନ । ୨ସଙ୍କସଂହାରେ ଖେଳନ୍ତି ୩ନବବାରିବାହ । ସମୀପରେ ତାର ବନ୍ଧୁ । ଛଇକୁଅଛନ୍ତି ନୃତ୍ୟ ଅନେକ ୪ବରହୀ । ୧ । ୧ସଞ୍ଚରଣଶୀଳ ୨ନବତମାଲଭୂରୁହ । ସଙ୍ଗେ ଘେନ ଆସିଛନ୍ତି କି ସଙ୍ଗ ୩ସକ୍ଷୀବ୍ୟୂହ । ଶାଖୀ ଶୁକ ୪ପରଭୃତ । ଶାଖାମାନଙ୍କରେ କରୁଅଛନ୍ତି ସଙ୍ଗୀତ । ୨ । ୧ସୁରେଶ୍ୱରରତନ କି ହେବାକୁ ୨ଜଙ୍ଗମ । ସବୁ ମଣିମାନଙ୍କୁ ମିଳିଲା ସେହି କ୍ରମ । ସ୍ୱସ୍ତିବର୍ଣ୍ଣୀ ଏ ଏଣିକ ସମ୍ଭାବ୍ୟବେ ମୂର୍ତ୍ତିମନ୍ତ ରତନଶ୍ରେଣୀକି ।୩। ସଜହୋଇ ଧୁର ସରଦାର ଅବା ଆସେ । ସ୍ୱକୀୟ ପଉଜ ଘେନିଅଛି ଗୃହପାଖେ । ସାରଦେବ କଷ୍ଟେ ଆଜ । ସରୋଜ ସୁନ୍ଦରନେହା ଜନମନୁଲାଜ । ୪ । ୧ସୁରଧୂନୀ ତୀରେ ଯେବେ କରିଥିବା ତପ । ସଙ୍ଗାଲି କରିବା ଏ ୨ତାପିଞ୍ଛଅନାଷ୍ଟପ । ସୁବେଶ ବଶୀବା ବସନ୍ତେ । ସାମନ୍ତ ସୁଧାଂଶୁ ଜଗଦ୍ଦେବ ବୋଲେ ଗୀତେ । ୫ ।

୧—ଆଗୋ ୧ଭ୍ରମର ନୀଳ ଚକୁରା; ଅନା ଅନା, କିପରି ନୂତନ ୨ମେଘ ସଦୃଶ ଶ୍ରୀକୃଷ୍ଣ ୫ପୃଥିବୀରେ କ୍ରୀଡ଼ା କରୁଅଛନ୍ତି । ଅନେକ ୪ମୟୂର ସଦୃଶ ସଖାମାନେ ତାଙ୍କ ନିକଟରେ ରହି କ୍ରୀଡ଼ା କରୁଅଛନ୍ତି ।

୨—ଗମନ ୧ଶୀଳ ନୂଆ ତମାଳ ୨ଗଛ ସଖା ସଖିମାନଙ୍କୁ ସାଥିରେ ଧରି ଆସି ଅଛୁ କି ! ଶାରୀଶୁଆ ଓ ୪କୋକିଳ ୩ମାନେ ଡାଳମାନଙ୍କରେ ବସି ଗୀତ ଗାନ କରୁଅଛନ୍ତି ଅର୍ଥାତ୍ ଗମନଶୀଳ ଓ ତମାଳସଦୃଶ ଶ୍ରୀକୃଷ୍ଣ ଅଟନ୍ତି ଗଛରେ ଡାଳଥାଏ, ଏଠାରେ ତାହାଙ୍କ ସଙ୍ଗରେ ବ୍ରଜଶିଶୁ ଅଛନ୍ତି ଏବଂ ତାହାର ଡାଳମାନଙ୍କରେ ରହି ଶାରୀ ଶୁଆ କୋଇଲି ପ୍ରଭୃତି ବୋବାଉ ଥାନ୍ତି ଏଠାରେ ସଖାମାନେ ସାଥିରେ ରହି ସଙ୍ଗୀତ ସହିତ ଖେଳା କରୁଅଛନ୍ତି ।

୩—ଇନ୍ଦ୍ର ୧ନୀଳମଣି ଚେତନ ପଦାର୍ଥ ସମ ୨ହେଲବାରୁ ସମସ୍ତ ମଣିମାନେ ବୋଧହୁଏ ସେହି ସମାନରେ ଚଳିତ ଶକ୍ତିକୁ ପାଇଲେଣି ତାହାହେଲେ ଏଣିକି କନକବର୍ଣ୍ଣ ବିଶିଷ୍ଟା ନାୟିକାମାନେ ଅକାରମନ୍ତ ରତ୍ନସମୂହକୁ ପାଇବେ । ଅର୍ଥାତ୍ ଶ୍ରୀକୃଷ୍ଣଙ୍କ ଦେହର କାନ୍ତି ଇନ୍ଦ୍ରନୀଳମଣି ପରି ଅଟେ । ଏଣୁ ଇନ୍ଦ୍ରନୀଳମଣି ଜଡ଼ପଦାର୍ଥ ହେଲେ ସୁଦ୍ଧା ଶ୍ରୀକୃଷ୍ଣ ଅଙ୍ଗରେ ମିଶିବାରୁ ସେ ଚେତନପଦାର୍ଥ ତୁଲ୍ୟ ଯେବେ ହେଲାଣି ତେବେ ଅନ୍ୟାନ୍ୟ ରତନ ସବୁ ଏଣିକି କାହାର ଅଙ୍ଗମାଙ୍ଗ ସାମ୍ୟହୋଇ ଶ୍ରୀକୃଷ୍ଣଙ୍କ ସଦୃଶ ଇନ୍ଦ୍ରନୀଳମଣି ଯେପରି ଆକାର ଧାରଣ କଲା ସେହିପରି ଆକାର ଧାରଣ କରିବେ । ଏଣୁ ସ୍ତ୍ରୀଲୋକମାନେ ତାହାଙ୍କୁ ସବୁ ମୂର୍ତ୍ତି ରୂପରେ ଗ୍ରହଣ କରିବେ ।

୪—କନ୍ଦର୍ପ ଶ୍ରେଷ୍ଠ ନିଜ ସୈନ୍ୟମାନଙ୍କୁ ତ୍ୱରିଅତେ ଘେରାଇ ସଜ ହୋଇକରି ଅବା ଆସୁଅଛୁ କି ? ଆଜ ମନୋହର ପଦ୍ମ ନୟନା ନାୟିକାଙ୍କ ହୃଦୟରୁ ଲାଜ ଛଡ଼ାଇନେବ । ଅର୍ଥାତ୍ ଶ୍ରୀକୃଷ୍ଣ ମୋହନ

ମୂର୍ତ୍ତିକୁ ଦେଖି ସ୍ତ୍ରୀମାନେ କନ୍ଦର୍ପତାରେ ବଶୀଭୂତ ହୋଇ ତାହାଙ୍କ ସଙ୍ଗରେ କ୍ରୀଡ଼ାକରିବାକୁ ଚିତ୍ତଏମାନ୍ତ ଲାଜଭୟ ପ୍ରଭୃତିକୁ ରଖିବେ- ନାହିଁ ।

୪— ଯଦ୍ୟପି ଅମ୍ଭେମାନେ ଗଙ୍ଗାକୂଳରେ ତପସ୍ୟା କରିଥିବା ତେବେ ଏ ତମାଲ ବୃକ୍ଷ ଅଙ୍କୁ ଗଣ୍ଡି ଧନ ସ୍ୱରୂପ କରିବା ଓ ବସନ୍ତକାଳରେ ଆନନ୍ଦରେ ବିହରିବା ସାମନ୍ତ ଶ୍ରେଷ୍ଠ ଜୟଦେବ ଗୀତରେ ଭାସଇ । ଅର୍ଥାତ୍ ଯେବେ ଅମ୍ଭେମାନେ ଗଙ୍ଗାରେ ଅନେକ ତପଜପ କରିଥିବା ତେବେ ତମାଲ ବୃକ୍ଷର ଛାୟାସଦୃଶ ଶ୍ରୀକୃଷ୍ଣଙ୍କ ବାହୁକୁ ଆଶ୍ରୟ ସ୍ୱରୂପ ପାଇ ସୁଖରେ କାଳାତିପାତ କରିବା ।



ଏତସ୍ୟୈଷତ୍କୋଣବୀକ୍ଷଣଦଳନୀଲାରବିନ୍ଦାଶୁଗାନ୍ୈ
ସାରୈଃ ସାରମ୍ଭସାରସୁନ୍ଦର ଦୃଶାଂ କନ୍ଦର୍ପଦର୍ପୋଦୟୈଃ ।
ଦାସ୍ୟଂ କିଂ ନ ବିବେଶ ବିଶ୍ୱମିହ ତୈସ୍ତ୍ରୀଂମଣୀନାଂ ଗଣୈଃ ।
ସଂବଧ୍ୟଂ ମୁରଲୀଂ ଦୁରନ୍ତଖୁରଲୀ ବିମ୍ବାଧରସ୍ଥୁମ୍ଭିତ ।

ଚରାଚରଧୈର୍ଯ୍ୟବିଧ୍ୱଂସିନାବଦ୍ଧା ବତ ସପୈ୍ୟତସ୍ୟ ବଂଶୀନିନଦେ ପ୍ରସରତ୍ୟର୍କଜାସ୍ତ୍ରୋଃ କାର୍କଶ୍ୟଜଳତାସ୍ତାଂ ଶୈଳାବଳୀନାଂ ସାକ୍ଷୀନ ସମ୍ପ୍ରେକ୍ଷିଷ୍ଟଂ ପ୍ରପୂଲକବପ୍ଷ ମୃଗାଣାମୁକ୍ତଂ ତାସ୍ତୁଃ ଫଣିନାଂ ଚକିତବକଚଲ୍ଲୋଚନଙ୍କ ଧ୍ୟାନୁଭବୋଦଭୂବ ।

ରାଗ ଗୌଡ଼ା ତାଲଝୁଲା ।

ହରି ଆମର ଗୋ ଏତ ପ୍ରାଣଧନ । ପଦ ।

୧ ହରି ହସ୍ତମଣିଙ୍କ ହଣୁଛି ୨ ଅପଘନ ଗୋ । ନିନ୍ଦୁଛି ଇନ୍ଦୁକୁ ସୁବଦନ ଗୋ ।୧। ହଜାରସଂଖ୍ୟକ ଏକ ହେଲେହେଁ ମଦନ ଗୋ । ହେବ କି ଏ ମୋହନ ସମାନ ଗୋ ।୨। ହଜି ନ ଯିବ ୧ କମ୍ପିତକେଶର କି ଜ୍ଞାନ ଗୋ । ଶୁଣି ମୃଦୁ ମୃଦୁ ବେଣୁଗାନ ଗୋ ।୩। ହଟେ ଥରେ

କରିଥିବା ୧ରଦାମ୍ବର ପାନ ଗୋ । ହେବତ ସଫଳ ଯଉବନ ଗୋ ।୪। ହାରମଧ୍ୟରେ ତରଳରତନ ସମାନ ଗୋ । ହେବ କି ଏଯୁବତିଜୀବନ ଗୋ । ୫ । ହୃଷ୍ଟ ହୁଏ ଅଷ୍ଟାଦୁର୍ଗ ନମୁଚିସୂଦନ ଗୋ । ହେଲା ଏ ରସର ବରଚନ ଗୋ । ୬ ।

ଗୋ ସଖି, ଏହି ଶ୍ରୀକୃଷ୍ଣ ଆମ୍ଭମାନଙ୍କର ଜୀବନ ସର୍ବସ୍ୱ ଅଟଇ । ଏହି ଶ୍ରୀକୃଷ୍ଣଙ୍କ ୨ଦେହ ୧ଇନ୍ଦ୍ରନୀଳମଣୀର କାନ୍ତିକୁ ଧିକ୍କାର କରଇ ଓ ସୁନ୍ଦର ମୁଖ ଚନ୍ଦ୍ରକୁ ବଳି ଶୋଭା ପାଉଛି ।

୨—ହଜାର ଗୋଟି କନ୍ଦର୍ପର ଶୋଭା ଏକତ୍ରିତ ହୋଇ ଗୋଟିଏ ସୁନ୍ଦର ମୂର୍ତ୍ତି ହେଲେ ସୁଦ୍ଧା ଏହି ଶ୍ରୀକୃଷ୍ଣଙ୍କ ତୁଲ୍ୟ ହେବନାହିଁ ।

୩—ଏହି ଶ୍ରୀକୃଷ୍ଣଙ୍କ ଧୀର୨ ବଂଶୀଧ୍ୱନି ଶୁଣି ୧ବଲାହକ କୁନ୍ତଳା ର ହୃତାହତ ବାକ୍‌ବଚନା ରହିବକି । ନିମ୍ନୋକ୍ତ ଅର୍ଥ ମେଧୂଆ

୪—ଯେ ସ୍ତ୍ରୀ ବାରେ ମାତ୍ର କୌଣସି କୌଶଳରେ ତାହାଙ୍କଠାରୁ ୧ଓଷ୍ଠରେ ଚୁମ୍ବନ ଗ୍ରହଣ କରିଥିବ ତାହାର ଯୁବାବସ୍ଥା ସାର୍ଥକହେବ ।

୫—ମାଳର ମଝିରେ ଯେପରି ଗୋଟିଏ ଉଜ୍ଜ୍ୱଳ ମଧ୍ୟ ମଣିଥାଏ ସେହି ପରି ଏହି କୃଷ୍ଣ ସ୍ତ୍ରୀ ମନାଙ୍କର ଜୀବନ ସର୍ବସ୍ୱ ହେବତ ? ଅର୍ଥାତ୍ ଯେ-ପରି କୌଣସି କୁରୁଯାତକମାଳ ଯାହାର ମଝିରେ ଉଲ୍ଲଷ୍ମ ଜଡ଼ାଉ କୁନ୍ଦନ କାମ ହୋଇଥିବା ଗୋଟିଏ ମଣି ଥାଏ ତାକୁ ବେକରେ ଲଗାଇଲେ ଯେପରି ସୁନ୍ଦର ଦିଶେ ସେହିପରି ଶ୍ରୀକୃଷ୍ଣଙ୍କୁ ପାଇଲେ ସେହିପରି ସୌଭାଗ୍ୟବତୀ ହେବେ ।

୬—ଆଠଗଡ଼ନରେନ୍ଦ୍ର ହୃଷ୍ଟହୋଇ ଏହିଗୀତକୁ ରଚନା କଲେ ।

ଦଳିତାଞ୍ଜନପୁଞ୍ଜମଞ୍ଜୁଲାଙ୍ଗେ ଲଳିତାମ୍ବୁଜଲୋଚନାର୍ଚ୍ଚିତାଙ୍ଘ୍ରେ
ପ୍ରଣତାମରଭୂରୁହଃ ଶ୍ରିତାନାଂ କଳିତାପଂ ଦଳୟତ୍ୱଳଂ କବୀନାଂ
ଲୀଳାକନୀଭରସୁଗ୍ରହିତବତବାହୋ-
ଗୀନାଶ୍ରକେନ୍ଦ୍ରଚରମାଦ୍ଭବଣଂ ମହୋନଃ ।

ଚୀନାମୀଲାଲ୍ମଚଲଦଞ୍ଚଲଚେଲମାଲଂ
ହୀନାଂଘସାମସୂମତାଂଶରଣଂଶରଣ୍ୟଂ ।
ପୀନାନୁକମ୍ପନରଧାମୃତଦୂରପୂର୍ତ୍ତେ
ଦୀନାଃସ୍ୟନ୍ତିଃସ୍ମୃତତତ୍ପ୍ରେମବସନ୍ତକଣ୍ଠଃ ।
ମୀନାଦ୍ୟନେକବିଧରୂପଧରଃପରାତ୍ମା
କୀନାଶଶଙ୍କଙ୍କରଭସ୍ୱାନ୍ ଜଗଦ୍ଧସାତୁ ।

ଶ୍ରୀମଦ୍ଭ୍ୟାମନ୍ୟୋନ୍ୟଲାବଣ୍ୟଲୋଲଲୋଚନାଭ୍ୟାମମ୍ବରବତ୍ତମ୍ବରବତ୍ତମ୍ଭିତାମ୍ବୂଧରରଚେନାଭ୍ୟାଙ୍କାର୍ତ୍ତ ସ୍ୱଭମପାଇଦ୍ଧାଦୃଶ୍ୟପୂର୍ତ୍ତିବର୍ଣ୍ଣିଭ୍ୟାମାର୍ତ୍ତସ୍ବଳକଶ୍ରୁଳପଙ୍କବର୍ଣ୍ଣିଭ୍ୟାଂ ରକ୍ତାରବିନ୍ଦସୌନ୍ଦର୍ଯ୍ୟଭୁନ୍ଦିଲଚରଣାଭ୍ୟାଂ ଭକ୍ତାନୁରକ୍ତାଚରଣାଭ୍ୟାମମାନୁଷାନୁଭାବବିଭବାଭ୍ୟାଂ ଶ୍ରୀରାଧାମଧବାଭ୍ୟାଂ ନମୋନମଃ ।

ରାଗ କେଦାର । ଅଦତାଳ ।

୧ କ୍ଷମାନୁକମ୍ପାଧର ହେ । ୨ କ୍ଷୀରସାଗରସମ୍ଭବା—କୁଚକୁମ୍ଭଯୁଗଳ—
୩ପରି-ରମ୍ଭ—ଚତୁର ହେ । ପଦ ।

୧କ୍ଷିତଚନ୍ଦ୍ରବାଲ ୨ମହାଭୀତନିବାରଣ-ହେ । ୩ଶ୍ରୁତିଶିର ୪ଅବତଂସାକୃତ ଶ୍ରୀଚରଣ ହେ । ୫ମରାଲବିହରଣ କରାର୍ଚ୍ଚିତ ଚରଣ ଧରାଭାର ହରଣ ଚରାଚରଶରଣ ୬ତରାବରକରଣ ବରାବର ଚରଣନଖାଂଶୁ ସୁରଗଣ ଶିଖାଭରଣ ହେ । ୧ ।

କ୍ଷଣେ ହେଲେ ନାମକୁ ମୁଁ ନଭଜେ ତୁମ୍ଭର ହେ । କ୍ଷମେ ହେବାରୁ ଁ ପାପିଗଣେ ବାଘମ୍ବର ହେ । ମନା ନକର ହତ ଅନାଦର ବହୁତ ଅଛାଉଣି ନରତ ଚୂନା ହରୁ ହୁରତ ଅନାରତ ମୋ ଚଉ ମନାସୁକୁ ଅହତ—ଜନାର୍ଦ୍ଦନ ପଣ୍ଡିତ ମାନଙ୍କୁ ହିତ ହେ । ୨ ।

୧କ୍ଷମ ମୁଁ ନୋହେଁତ ଅନୁପମ ୨ଅନୁଭବ ହେ ୩କ୍ଷମଦଣ୍ଡରୁ ମୋ ରକ୍ଷା କେମନ୍ତେ ହେବ ହେ । ଜାଲାକର ଭବନ ବଲାମୁଖ ଭୁବନ ବଳହତ

ରଚନ ବଳାବର ଯତନ ବଳାପର ବୃଜିନଦଳା ସୂକୃତ ଧନ୍ୟବଳାଢ୍ୟ ମୁକ୍ତଜନଙ୍କଳାପିଧନ ହେ । ୩ ।

କ୍ଷମାଧିପ ଜଗଦେବ ବନ୍ଦେହମାପରରେ ହେ । ଶ୍ରମାର୍ତ୍ତ ହେବାରୁ ଭବଭ୍ରମା ଛଡାଯିରେ ହେ । ବ୍ୟଥାନିବହ ହର ୧ପ୍ରଥାରତ୍ନ ମୋହର ୨ପଥାନ୍ତରକୁ ହର ୩ରଥାଦରୁ ଅମର ୪ମଥାମଣିନାଳର ୫ରଥାଙ୍ଗ ଯୁଗକର କଥା ବନସ୍ୟ ମୋର ବୃଥା ନକର ହେ । ୪ ।

କବି ଏହି ପୁସ୍ତକର ଶେଷ ଏହି "କ୍ଷ" ଗୀତରେ ଶ୍ରୀକୃଷ୍ଣଙ୍କୁ ସ୍ତୁତି କରି କହୁଅଛନ୍ତି । କ୍ଷମାନୁକମ୍ପାଧଇ-ସହିଷ୍ଣୁତା ଓ ୧ଦୟାକୁ ଧାରଣ କରି ଅଛନ୍ତି ଯେ ସେ । ହେ ପ୍ରଭୁ । ଲୋକମାନେ କୌଣସି ପ୍ରକାର ପାପ କାର୍ଯ୍ୟ କରି ଅପଣଙ୍କ ଶ୍ରୀଚରଣରେ ଦୋଷିହେଲେ ଅପଣ ତାହା ମାର୍ଜନାକର ଓ କେହି ଆପଦରେ ପଡ଼ି ଅପଣଙ୍କୁ ଡ଼ାକିଲେ ଅପଣ ତାହା ପ୍ରତି ଦୟା ପ୍ରକାଶ କରି କ୍ଷୀରସମୁଦ୍ରରୁ ଜାତ ହୋଇ ଅଛନ୍ତି ଏପରି ଯେ ୨ଲକ୍ଷ୍ମୀ ତାହାଙ୍କ ସ୍ତନ ଦ୍ୱୟକୁ ୩ଥଲିଙ୍ଗନ କରିବା ବିଷ-ୟରେ ନିପୁଣ ଅଟ ।

ହେ ପ୍ରଭୁ ! ଆପଣ ୧ପୃଥିବୀ ଦଣ୍ଡବଳୟ ମଧ୍ୟରେ ଥିବା ୨ଯମ-ଦଣ୍ଡକୁ ହରଣକର ଅପଣଙ୍କ ପାଦପଦ୍ମ ୩ବେଦ ପ୍ରଭୃତି ଶାସ୍ତ୍ରର ୪ଶିର ଭୂଷା ହୋଇ ଅଛି । ଅପଣଙ୍କ ପାଦ ହଂସ ବାହନ ୫ବ୍ରହ୍ମାଙ୍କ ହସ୍ତରେ ପୂଜା ପାଉଅଛି । ପୃଥିବୀର ଭାରକୁ ହରଣକର ସ୍ଥାବର ଜଙ୍ଗମ ଅପଣ-ଙ୍କର ଅଶ୍ରିତ ଅଟନ୍ତି । ଅପଣଙ୍କ ପାଦ ଅଙ୍ଗୁଳି ନଖର କିରଣ ଠିକ ଚନ୍ଦ୍ରଙ୍କ କିରଣ ସଦୃଶ ଅଟେ । ସେହି କିରଣକୁ ଦେବତାମାନେ ମସ୍ତକରେ ଧାରଣ କରିଥିଛନ୍ତି । ଅର୍ଥାତ୍ ହେ ପ୍ରଭୁ ଅପଣଙ୍କୁ ଭଜିଲେ ଅପଣ ପୃଥିବୀସ୍ଥ ସମସ୍ତପ୍ରାଣିମାନଙ୍କୁ ମୃତ୍ୟୁ ଭୟରୁ ରକ୍ଷାକର ଓ ଅମର କରିଦିଅ । ବେଦ ପ୍ରଭୃତି ଧର୍ମ ଶାସ୍ତ୍ରମାନଙ୍କରେ ଅପଣଙ୍କ ପାଦପଦ୍ମର

ଯହିଁମା ବର୍ଣ୍ଣିତ ହୋଇ ଥିବାରୁ ତାହା ସମସ୍ତ ଜଗତର ଆଦରଣୀୟ ଓ ପୂଜନୀୟ ହୋଇଅଛି । ଆପଣଙ୍କ ପାଦପଦ୍ମ ଏତେଦୂର ପବିତ୍ର ଓ ଶ୍ରେଷ୍ଠ ଯେ ତାହାକୁ ବ୍ରହ୍ମା ସ୍ୱହସ୍ତରେ ଧୌତକରି ପୂଜା କରୁଅଛନ୍ତି [illegible]ଥିବାରୁ ଯାବତୀୟ ପାପ ଭାରକୁ ଆପଣ ବହୁଥାଅ । ପୃଥିବୀରେ ଥିବା ଗଛ ଲତାଠାରୁ ଯାବତୀୟ ପ୍ରାଣୀମାନଙ୍କୁ ଆପଣ ବିପଦରୁ ରକ୍ଷାକର ଚନ୍ଦ୍ର ଆପଣଙ୍କ ଶରୀରର କୌଣସି ଅଂଶକୁ ସରିନୁହେ କେବଳ ଗୋଡ ନଖର ଜ୍ୟୋତି ସଙ୍ଗେ ତାହା ସମାନ ଏଣୁ ଦେବତାମାନେ ସେହି ଜ୍ୟୋତିକୁ ମସ୍ତକଭୂଷା କରି ଅଛନ୍ତି ।

ଚକ୍ରବାଳ=ଦିଗ୍‌ବଳୟ କ ଗୋଟିଏ ପଡିଆରେ ଦଣ୍ଡାୟମାନ ହୋଇ ଚାହିଁଲେ ଯେଉଁ ଠାରେ ଆକାଶ ଓ ପୃଥିବୀ ଲାଗିଲାପରି ବୋଧହୁଏ ସେହି ସ୍ଥାନକୁ ଚକ୍ରବାଳ କହନ୍ତି ।

ହେ ସଂସାରପାଳକ, ମୁଁ ନାରକୀ ମାନଙ୍କ ମଧ୍ୟରେ ଅଯୋଗ୍ୟହେବାରୁ ତୁମ୍ଭନାମକୁ ମୁହୂର୍ତ୍ତକ ନିମିତ୍ତ ନ ଜପଇ । ଏଣୁ ହତାଦର କରି ମୋର ଅନୁକୂଳକୁ ନାସ୍ତି କରନାହିଁ । ତୁମ୍ଭର ଗୃହ୍ବାଣି ମୋର ଦୁଷ୍କୃତକୁ ସଦା ଭସ୍ମୀଭୂତ କରିଦେଉ । ହେ ବିଷ୍ଣୁ, ଅଧମ ତାରଣ, ମୋ ହୃଦୟ ସର୍ବଦା ଅମଙ୍ଗଳ ବାଞ୍ଛା କରଇ ।

୨

ଅର୍ଥାତ୍ ହେବିଷ୍ଣୁ ମୋମନ ସର୍ବଦା ପାପ ଚିନ୍ତାରେ ପୂର୍ଣ୍ଣ ଥିବାରୁ ଆପଣଙ୍କ ନାମକୁ ବାରେ ମାତ୍ର ତୁଣ୍ଡରେ ଧରୁନାହିଁ । ଏଥି ସକାଶେ ଆପଣ ମୋଠାରେ ହତାଦର ନକର ମୋର ଯେଉଁ ବିଷୟ ଭଲହେବ ଓ ମୁଁ ମୁକ୍ତି ପାଇବି ତାହା ଦେଖାଇ ଦିଅ । ମୋର ମତି ଯେପରି ମନ୍ଦ ଆଡିକୁ ନ ଯିବ ସେ ପ୍ରତି ଆପଣ ଦୃଷ୍ଟି ରଖନ୍ତୁ । ହେ ଅଧମତାରଣ ମୋ ମନ ସନ୍ତତ ଅହିତ କଥା ଅର୍ଥାତ୍ କିପରି ଧନୀ, ମାନୀ ବିଦ୍ୱାନ୍, ସୁକୃତଶାଳୀ, ସୁପୁତ୍ରବାନ୍ ହେବା ଏହି ସବୁ ଅହିତ କଥାକୁ ମନରେ ଭାବନା କରୁଅଛି ।

୩

ହେ ଅତୁଲ୍ୟ ଜ୍ଞାନ ମୁଁ କ୍ଷମା ପାଇବାକୁ ଯୋଗ୍ୟ ନୁହେ, ମୃତ୍ୟୁ ଭୟରୁ ମୁଁ କପରି ରକ୍ଷା ପାଇବ । ହେ ଯୀଗ୍ରବୁଦ୍ଧିଶାୟୀ, ଜଳଶ୍ୟାମ ପାରିପାର୍ଶ୍ୱିକ ହୋଇ ଅଛନ୍ତି ସଂସାରରେ ଯାହାଙ୍କର, ରାକ୍ଷସମାନଙ୍କପୁର ପାତ ଲରୁ ବଳଦ୍ୱାରା ଭଗ୍ନ ସଂଗ୍ରାହକ, ବଳା ( ଅସ୍ତ୍ର ବଦାଭେର ଶ୍ରେଷ୍ଠ ) ଯତ୍ନ ପୂର୍ବକ ଇନ୍ଦ୍ରଙ୍କ ହୁଃଷ୍କୃତ ଦଳା, ସୁକୃତି ମାନଙ୍କ ମଧ୍ୟରେ ଶ୍ରେଷ୍ଠ, ବଳବାନ୍ ଋଷିମାନଙ୍କ ମନରୂପ ମୟୂରପକ୍ଷୀ ପ୍ରତି ମେଘ ସଦୃଶ ଅଟ ।

ବଳା—ଅସ୍ତ୍ରବିଶେଷ ରାମଚନ୍ଦ୍ରଙ୍କୁ ବିଶ୍ୱାମିତ୍ର ଦେଇଥିଲେ .

୪

ହେ ଯମ୍ନାକାରି, ଜଗଦେବ ସଂସାର ମାୟାରେ ଭ୍ରମେ ‘କ୍ଳାନ୍ତ ହୋ।” ଶେଷରେ କହଇ । “ ଆପଣ କଷ୍ଟ ସମୂହକୁ ବିନାଶ କରିଦଅଇ ଏହି ଯେ ଆପଣଙ୍କ ‘ନାସୃମ ସେ ‘ପୃଥିବୀର ଆରମ୍ଭଠାରୁ ସୂର୍ଯ୍ୟ ‘ମାର୍ତ୍ତଶେଷପର୍ଯ୍ୟନ୍ତ ପ୍ରକାଶ ପାଉ । ହେ ୪ସର୍ବ ଦେବତା ଶ୍ରେଷ୍ଠ, ହେ ୫ଚକ୍ରପାଣି, ମୋହର ଗୁହାରିଟାକୁ ଘେନାଇର ।

ହରରଥ—ପୃଥିବୀ । ତ୍ରିପୁରାସୁରକୁ ମହାଦେବ ମାରିବା ସମୟରେ ପୃଥିବୀ ରଥ ହୋଇଥିଲା ।

ସମାପ୍ତ ।



# ବିଜ୍ଞାପନ ।

ଏତଦ୍ଦ୍ୱାରା ସମସ୍ତ ସଙ୍ଗୀତୋତ୍ସାହୀ ଜନ ସାଧାରଣଙ୍କ ନିକଟରେ ନିବେଦନ ଏହି କି କବିସୂର୍ଯ୍ୟ ରାୟଗୁରୁଙ୍କ ବିରଚିତ " କିଶୋର-ଚନ୍ଦ୍ରାନନ୍ଦ ଚମ୍ପୂ " ଆଜପର୍ଯ୍ୟନ୍ତ ଅର୍ଥସହିତ କେହି ଛପାଇ ନ ଥିବାରୁ ମୁଁ କଷ୍ଟ ସ୍ୱୀକାର ପୂର୍ବକ ବହୁ ସମୟ ବ୍ୟୟ କରି ଉକ୍ତ ଚମ୍ପୂ ଅର୍ଥକରି ଛପାଇ ଅଛି । ଏଥିରେ ମଧ୍ୟ ପଣ୍ଡିତ ଏବଂ ସଙ୍ଗୀତଜ୍ଞ ଶ୍ରୀ ବାବୁ ଆରତ-ତ୍ରାଣ ଦାଶ ଓ ବାବୁ ଗୌରହରି ପଟ୍ଟନାୟକ ମହାଶୟ ମୋତେ ବହୁ ସାହାଯ୍ୟ ଦେଇ ମୋହର ମନୋରଥ ସଫଳ କରି ଅଛନ୍ତି, ଅତଏବ ପ୍ରାର୍ଥନା ଏହିକି ସଙ୍ଗୀତ ପ୍ରିୟ ବ୍ୟକ୍ତିମାନେ ଏହାକୁ ଥରେ ମାତ୍ର ପାଠ କରି ଏଥିରେ ଥିବା ଦୋଷାଦୋଷ ଅନୁଗ୍ରହ ପୂର୍ବକ ଜଣାଇଲେ ମୁଁ ଦ୍ୱିତୀୟ ବାରକୁ ସଂଶୋଧନ କରି ଚରିତାର୍ଥ ହେବ । ଇତି ।

ପ୍ରକାଶକ ।